॥ ଶ୍ରୀହରିଃ ॥

1208 ▲

# ଆଦର୍ଶ କାହାଣୀ ଚୟନ

आदर्श कहानियाँ ( ओड़िआ )




गीताप्रेस गोरखपुर
GITA PRESS, GORAKHPUR

ଗୀତାପ୍ରେସ, ଗୋରଖପୁର

॥ ଶ୍ରୀହରିଃ ॥

# ଆଦର୍ଶ କାହାଣୀ ଚୟନ

[ପରମ ଶ୍ରଦ୍ଧେୟ ସ୍ୱାମୀ ଶ୍ରୀରାମସୁଖଦାସଜୀ ମହାରାଜଙ୍କ ପ୍ରବଚନରୁ
ସଂଗୃହୀତ ବତିଶଟି ଶିକ୍ଷାପ୍ରଦ କାହାଣୀ]

**आदर्श कहानियाँ ( ओड़िआ )**

ତ୍ୱମେବ ମାତା ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବ ସର୍ବଂ ମମ ଦେବଦେବ ॥

ସଙ୍କଳକ—ରାଜେନ୍ଦ୍ର କୁମାର ଧବନ

ଭାଷାନ୍ତର—ଦୀନବନ୍ଧୁ ବ୍ରହ୍ମଗ୍ୱରୀ

1208 Adarsh kahaniyan_oriya_Section_1_1_Front

*Books are also available at*—

1. Gita Press, Gorakhpur Ki Pustak-Dukan,
   Bharatiya Towers, Badam Badi, Cuttack
   © (0671) 2335481, Mob. 8847856627
2. Cuttack, Railway Station, Platform No.1
3. Bhubaneswar, Railway Station, Platform No.1
4. Howrah, Railway Station, Platform No.5&18 Both.
5. Gobind Bhavan, 151, Mahatma Gandhi Road,
   Kolkata © (033) 40605293, 22680251; 22686894

Twenty-second Reprint 2019 5,000

Total 1,42,500

❖ **Price : ₹ 15**

**( Fifteen Rupees only )**

Printed & Published by :

**Gita Press, Gorakhpur—273005 (INDIA)**

(a unit of Gobind Bhavan-Karyalaya, Kolkata)

Phone : (0551) 2334721, 2331250, 2331251

web : **gitapress.org** e-mail : **booksales@gitapress.org**

Visit **gitapressbookshop.in for online purchase of Gitapress publications.**

1208 Adarsh kahaniyan_oriya_Section_1_1_Back

॥ ଶ୍ରୀହରିଃ ॥

# ପ୍ରାକ୍କଥନ

ଆବାଲବୃଦ୍ଧବନିତା ସମସ୍ତଙ୍କର କାହାଣୀ ଶୁଣିବା ପାଇଁ ସ୍ୱାଭାବିକଭାବେ ରୁଚି ଥାଏ । ସମାଜର ଉତ୍‌ଥାନ ଓ ପତନରେ କାହାଣୀର ଭୂମିକା ମହତ୍ତ୍ୱପୂର୍ଣ୍ଣ । ସଜ୍ଜନଙ୍କ ମୁଖନିଃସୃତ କାହାଣୀ ଯେଉଁଠି ସମାଜରେ ଅମୃତ (ସଦ୍‌ଗୁଣ ଓ ସଦାଗ୍ରହ)ର ଗଙ୍ଗା ପ୍ରବାହିତ କରେ, ସେଠାରେ ସାଂସାରିକ ଉପନ୍ୟାସ, ସିନେମା, ଟିଭି ଆଦି ଦ୍ୱାରା ପ୍ରସାରିତ କାହାଣୀ ପ୍ରବାହିତ କରେ ବିଷ (ଦୁର୍ଗୁଣ ଓ ଦୁରାଗ୍ରହ)ର ଧାରା । ବାଳକର ପ୍ରଥମ ଗୁରୁ ହେଉଛି ମାଆ । ସେ ମଧ୍ୟ କାହାଣୀ ମାଧ୍ୟମରେ ହିଁ ବାଳକର କୋମଳ ହୃଦୟରେ ଉତ୍ତମ ସଂସ୍କାର ଜାଗ୍ରତ କରାଏ, ଯାହାକି ତା'ର ଭାବୀ ଜୀବନର ଉନ୍ନତିରେ ସହାୟକ ହୁଏ ।

ପାରମାର୍ଥିକ ବିଷୟକୁ ସରଳଭାବରେ ବୁଝାଇବାରେ ମଧ୍ୟ କାହାଣୀ ବହୁତ ସହାୟକ ହୁଏ । ପୌରାଣିକ କାହାଣୀ(କଥା)ଗୁଡ଼ିକ ମଧ୍ୟ ପାରମାର୍ଥିକ ବିଷୟକୁ ସରଳଭାବରେ ବୁଝାଇବା ପାଇଁ ଉଦ୍ଦିଷ୍ଟ । ଅତ୍ୟନ୍ତ କଠିନ ବିଷୟକୁ ମଧ୍ୟ କାହାଣୀର ଅବଲମ୍ବନରେ ସହଜରେ ବୁଝି ଜୀବନରେ ଆଚରଣ କରି ହେବ । ମିତ୍ର ଓ କାନ୍ତାଠାରୁ ଉପଦେଶ ଲାଭ କଲାପରି କାହାଣୀ ଦ୍ୱାରା ଉପଦେଶ ପ୍ରାପ୍ତ ହୁଏ ଏବଂ ତାହା ମନୁଷ୍ୟକୁ ସ୍ୱାଭାବିକଭାବେ ପ୍ରିୟ ଲାଗେ । ତେଣୁ ପରମ ଶ୍ରଦ୍ଧେୟ ସ୍ୱାମୀ ଶ୍ରୀରାମସୁଖଦାସଜୀ ମହାରାଜ ତାଙ୍କ ପ୍ରବଚନରେ ମାର୍ମିକ ବିଷୟକୁ ବୁଝାଇବା ପାଇଁ ଅନେକ କାହାଣୀ କହିଥାନ୍ତି ଏବଂ ତାହା ଆବାଲବୃଦ୍ଧବନିତା ସମସ୍ତ ଶ୍ରୋତାଙ୍କ ହୃଦୟରେ ଗଭୀର ପ୍ରଭାବ ପକାଏ । ସେଥିମଧ୍ୟରୁ କେତୋଟି କାହାଣୀର ସଂକଳନ ପ୍ରସ୍ତୁତ ପୁସ୍ତକରୂପରେ ପ୍ରକାଶିତ କରାଯାଉଛି । ମୋର ଆଶା, ପାଠକଗଣ ଏହି ରୋଚକ ଓ ଜ୍ଞାନପ୍ରଦ କାହାଣୀଗୁଡ଼ିକୁ ପସନ୍ଦ କରିବେ ଏବଂ ଏହି ଶିକ୍ଷାକୁ ନିଜ ଜୀବନରେ ପ୍ରତିଫଳିତ କରିବା ପାଇଁ ଚେଷ୍ଟା କରିବେ ।

ବିନୀତ

**ରାଜେନ୍ଦ୍ର କୁମାର ଧବନ**

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|




1208 Adarsh kahaniyan_oriya_Section_1_2_Back

॥ ଶ୍ରୀହରିଃ ॥

# ୧. ଭଗବାନଙ୍କ କୃପା

ଜଣେ ରାଜା ଥିଲେ । ତାଙ୍କର ମନ୍ତ୍ରୀ ଥିଲେ ଭଗବାନଙ୍କର ଜଣେ ଭକ୍ତ । ଯାହା କିଛି ଘଟୁଥିଲା, ସେ କହୁଥିଲେ, 'ଏହା ଭଗବାନଙ୍କର ଅଶେଷ କୃପା' । ଦିନେ ରାଜାଙ୍କର ପୁଅଟି ମରିଗଲା । ମୃତ୍ୟୁ ଖବର ଶୁଣିବାମାତ୍ରେ ମନ୍ତ୍ରୀ କହି ଉଠିଲେ—ଏହା ଭଗବାନଙ୍କର ଅଶେଷ କୃପା! ଏହା ଶୁଣି ରାଜାଙ୍କୁ ବଡ଼ ଖରାପ ଲାଗିଲା; ତଥାପି ସେ ଚୁପ୍ ରହିଲେ । କିଛି ଦିନ ପରେ ରାଜାଙ୍କର ପତ୍ନୀ ମରିଗଲେ । ମନ୍ତ୍ରୀ କହିଲେ—ଏହା ତ ଭଗବାନଙ୍କର ଅଶେଷ କୃପା! ରାଜା ରାଗିଗଲେ; କିନ୍ତୁ ସେ ରାଗକୁ ଚାପି ରଖି ଚୁପ୍ ରହିଲେ, କିଛି କହିଲେ ନାହିଁ । ଦିନେ ଜଣେ କାରିଗର ଗୋଟିଏ ନୂଆ ଖଣ୍ଡା ତିଆରି କରି ରାଜାଙ୍କୁ ଦେଖାଇବାକୁ ଆସିଲା । ରାଜା ଅଙ୍ଗୁଳି ଲଗାଇ ଖଣ୍ଡାର ଧାର ଦେଖୁ ଦେଖୁ ତୀକ୍ଷ୍ଣ ଧାରରେ ଆଖିପିଛୁଳାକେ ତାଙ୍କ ଅଙ୍ଗୁଳି କଟିଗଲା! ମନ୍ତ୍ରୀ ପାଖରେ ଠିଆ ହୋଇଥିଲେ । ସେ କହିଲେ—ଏହା ତ ଭଗବାନଙ୍କର ଅଶେଷ କୃପା! ଏ କଥା ଶୁଣି ରାଜାଙ୍କ ଅନ୍ତରରେ ଜମା ହୋଇଥିବା ସବୁଯାକ ରାଗ ଏକାବେଳେକେ ବାହାରିପଡ଼ିଲା ଏବଂ ସେ ମନ୍ତ୍ରୀଙ୍କୁ ତାଙ୍କ ରାଜ୍ୟରୁ ଅବିଳମ୍ବେ ବାହାରିଯିବାକୁ ଆଦେଶ ଦେଇ କହିଲେ—"ତୁମେ ମୋ ରାଜ୍ୟରେ ଅନ୍ନ ଓ ଜଳ ବି ଗ୍ରହଣ କରିବ ନାହିଁ ।" ମନ୍ତ୍ରୀ କହିଲେ—ଏହା ତ ଭଗବାନଙ୍କର ଅଶେଷ କୃପା! ମନ୍ତ୍ରୀ ନିଜ ଘରକୁ ଗଲେ ନାହିଁ କି ସଙ୍ଗରେ କୌଣସି ଜିନିଷପତ୍ର ମଧ୍ୟ ନେଲେ ନାହିଁ, ରାଜ୍ୟ ବାହାରକୁ ଚାଲିଗଲେ ।

ଏପରି କିଛି ଦିନ ବିତିଗଲା । ଦିନେ ରାଜା ନିଜର ସୈନ୍ୟସାମନ୍ତଙ୍କ ସହିତ ଶିକାର କରିବା ଉଦ୍ଦେଶ୍ୟରେ ଜଙ୍ଗଲକୁ ଯାଇଥିଲେ । ଜଙ୍ଗଲରେ ଗୋଟିଏ ବାରହା ପଛରେ ଗୋଡ଼ାଇ ଗୋଡ଼ାଇ ରାଜା ଘଞ୍ଚ ଜଙ୍ଗଲ ଭିତରକୁ ବହୁଦୂର ପର୍ଯ୍ୟନ୍ତ ଚାଲିଗଲେ । ତାଙ୍କର ସୈନ୍ୟସାମନ୍ତମାନେ

ବହୁତ ପଛରେ ରହିଗଲେ। ସେଠାରେ ଦଳେ ଡାକୁ ରହୁଥାଆନ୍ତି। ସେହି ଦିନ ଡାକୁମାନେ କାଳୀଙ୍କ ପାଖରେ ଗୋଟିଏ ନରବଳି ଦେବା ପାଇଁ ସ୍ଥିର କରିଥିଲେ। ଯୋଗକୁ ଡାକୁମାନେ ରାଜାଙ୍କୁ ପାଇଗଲେ। ସେମାନେ ରାଜାଙ୍କୁ ଧରି ବାନ୍ଧି ପକାଇଲେ। ତା'ପରେ ସେମାନେ ବଳି ଦେବା ପାଇଁ ସବୁ ପ୍ରକାର ପ୍ରସ୍ତୁତିରେ ଲାଗି ପଡ଼ିଲେ। ସବୁ ପ୍ରସ୍ତୁତ ହୋଇଯିବା ପରେ ଡାକୁମାନଙ୍କର ପୁରୋହିତ ରାଜାଙ୍କୁ ପଚ୍ଚାରିଲେ—ତୁମର ପୁଅ ବଞ୍ଚିଛି? ରାଜା କହିଲେ—ନା, ସେ ମରିଯାଇଛି। ପୁରୋହିତ କହିଲେ, ଏଇଟାର ହୃଦୟ ଜଳିଯାଇଛି। ପୁଣି ପୁରୋହିତ ପଚ୍ଚାରିଲେ—ତୁମର ସ୍ତ୍ରୀ ଜୀବିତ ଅଛି ନା ନାହିଁ? ରାଜା କହିଲେ—ସେ ମଧ୍ୟ ମରିଯାଇଛି। ପୁରୋହିତ କହିଲେ—ଏଇଟାର ଅର୍ଦ୍ଧାଙ୍ଗ ନଷ୍ଟ ହୋଇ ଯାଇଛି। ଏ ବଳି ପାଇଁ ଯୋଗ୍ୟ ନୁହେଁ। କିନ୍ତୁ କିଏ ଜାଣେ, କାଳେ ମରଣ ଭୟରେ ମିଛ କହୁଥିବ! ତେଣୁ ପୁରୋହିତ ରାଜାଙ୍କର ଅଙ୍ଗପ୍ରତ୍ୟଙ୍ଗ ପରୀକ୍ଷା କରି ଦେଖିଲେ। ଦେଖୁ ଦେଖୁ ଦେଖାଗଲା ଯେ ତାଙ୍କର ଗୋଟିଏ ଅଙ୍ଗୁଳି କଟିଯାଇଛି। ପୁରୋହିତ କହିଲେ—ଆରେ! ଏଇଟାର ତ ଅଙ୍ଗଭଙ୍ଗ ହୋଇଛି; ଏଇଟା ବଳିର ଯୋଗ୍ୟ ନୁହେଁ! ୟାକୁ ଛାଡ଼ିଦିଅ। ଡାକୁମାନେ ରାଜାଙ୍କୁ ଛାଡ଼ିଦେଲେ।

ରାଜା ନିଜ ନଅରକୁ ଫେରି ଆସିଲେ। ଫେରି ଆସି ସେ ନିକଟସ୍ଥ କର୍ମଚ୍ଚାରୀଙ୍କୁ ଆଦେଶ ଦେଲେ, "ଆମ ମନ୍ତ୍ରୀ ଯେଉଁଠି ଥିଲେ ବି, ତାଙ୍କୁ ଖୋଜି ଖୋଜି ଶୀଘ୍ର ମୋ ପାଖକୁ ଆଣ। ମନ୍ତ୍ରୀ ଫେରି ନ ଆସିବା ଯାଏ, ମୁଁ ଅନ୍ନଜଳ ଗ୍ରହଣ କରିବି ନାହିଁ।" ରାଜକର୍ମଚ୍ଚାରୀମାନେ ବହୁତ ଖୋଜି ଖୋଜି ମନ୍ତ୍ରୀଙ୍କୁ ପାଇଲେ ଏବଂ ରାଜାଙ୍କ ନିକଟକୁ ଯିବା ପାଇଁ ତାଙ୍କୁ ଅନୁରୋଧ କଲେ। ମନ୍ତ୍ରୀ କହିଲେ—ଏହା ତ ଭଗବାନଙ୍କର ଅଶେଷ କୃପା! ମନ୍ତ୍ରୀ ଆସି ରାଜାଙ୍କ ନିକଟରେ ପହଞ୍ଚିଲେ। ରାଜା ତାଙ୍କୁ ଆଦର କରି ଆସନ ଦେଲେ ଏବଂ ନିଜର ଭୁଲ୍ ପାଇଁ ପଶ୍ଚାତ୍ତାପ କରି ଜଙ୍ଗଲର ସମସ୍ତ ବୃତ୍ତାନ୍ତ ଶୁଣାଇ କହିଲେ, "ସେତେବେଳେ ମୁଁ ତୁମ କଥା ବୁଝି ପାରି ନ ଥିଲି। ଭଗବାନଙ୍କର ମୋ ଉପରେ କେତେ

ଯେ କୃପା ଥିଲା, ତାହା ମୁଁ ଏବେ ବୁଝି ପାରିଲି । ଭଗବାନଙ୍କ କୃପାରୁ ଯଦି ମୋର ଅଙ୍ଗୁଳିଟି କଟି ନ ଥାଆନ୍ତା, ତେବେ ସେଦିନ ମୋର ମୁଣ୍ଡ କଟା ହୋଇଥାଆନ୍ତା! କିନ୍ତୁ ମୁଁ ତୁମକୁ ଯେତେବେଳେ ରାଜ୍ୟରୁ ବାହାର କରିଦେଲି, ସେତେବେଳେ ତୁମେ କହିଥିଲ ଯେ, ଏହା ଭଗବାନଙ୍କର ଅଶେଷ କୃପା । ତେବେ ସେହି କୃପାଟି ଯେ କ'ଣ, ତାହା ମୁଁ ଆଜି ପର୍ଯ୍ୟନ୍ତ ବୁଝି ପାରି ନାହିଁ!'' ମନ୍ତ୍ରୀ କହିଲେ, ''ମହାରାଜ! ଆପଣ ଯେତେବେଳେ ଶିକାର କରିବା ପାଇଁ ଯାଇଥିଲେ, ସେତେବେଳେ ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଯାଇଥାଆନ୍ତି । ଆପଣଙ୍କ ସହିତ ମୁଁ ମଧ୍ୟ ଜଙ୍ଗଲରେ ବହୁଦୂର ପର୍ଯ୍ୟନ୍ତ ପଳାଇଥାନ୍ତି; କାରଣ ମୋ ଘୋଡ଼ା ମଧ୍ୟ ଆପଣଙ୍କ ଘୋଡ଼ାଠାରୁ କୌଣସି ଦୃଷ୍ଟିରୁ କମ୍ ନୁହେଁ । ଡାକୁମାନେ ଆପଣଙ୍କ ସହିତ ମୋତେ ମଧ୍ୟ ଧରି ନେଇ ଥାଆନ୍ତେ । ଆପଣଙ୍କର ଅଙ୍ଗୁଳି କଟିଯାଇଥିବାରୁ ଆପଣ ସିନା ରକ୍ଷା ପାଇଗଲେ, କିନ୍ତୁ ସେଦିନ ମୋର ମୁଣ୍ଡ ନିଶ୍ଚୟ କଟା ହୋଇ ଥାଆନ୍ତା! ଭଗବାନଙ୍କ କୃପାରୁ ମୁଁ ଆପଣଙ୍କ ସଙ୍ଗରେ ନ ଥିଲି, ରାଜ୍ୟ ବାହାରେ ଥିଲି; ତେଣୁ ମୃତ୍ୟୁରୁ ରକ୍ଷା ପାଇଗଲି ଏବଂ ମୁଁ ପୁଣି ଥରେ ପୂର୍ବ ପରି ନିଜ ସ୍ଥାନରେ ନିଯୁକ୍ତି ପାଇଗଲି । ଏହା ଭଗବାନଙ୍କର ହିଁ ତ କୃପା!''



# ୨. ପାପର ଫଳ ଅବଶ୍ୟ ଭୋଗିବାକୁ ପଡ଼େ

ମନୁଷ୍ୟ କଦାପି ଏପରି ସନ୍ଦେହ କରିବା ଉଚିତ ନୁହେଁ ଯେ, ମୋର ପାପ କମ୍ ଥିଲା, ଅଥଚ ଦଣ୍ଡ ଅଧିକ ଭୋଗିବାକୁ ପଡ଼ିଲା ଅଥବା ମୁଁ ପାପ କରି ନ ଥିଲି, କିନ୍ତୁ ମୋତେ ଦଣ୍ଡ ମିଳିଲା! କାରଣ ଏହା ସର୍ବଜ୍ଞ, ସର୍ବସୁହୃଦ୍ ଓ ସର୍ବସମର୍ଥ ଭଗବାନଙ୍କର ବିଧାନ। ଭଗବାନଙ୍କ ବିଧାନରେ କାହାକୁ ପାପଠାରୁ ଅଧିକ ଦଣ୍ଡ ମିଳେ ନାହିଁ ଏବଂ ଯେଉଁ ଦଣ୍ଡ ମିଳେ, ତାହା ଅବଶ୍ୟ କୌଣସି ନା କୌଣସି ପାପର ହିଁ ଫଳ।

ଶୁଣିଥିବା ଘଟଣା। ଗୋଟିଏ ଗାଆଁରେ ଜଣେ ଭଦ୍ରବ୍ୟକ୍ତି ରହୁଥିଲେ। ତାଙ୍କ ଘର ଆଗରେ ଜଣେ ବଣିଆ ରହୁଥିଲା। ବଣିଆ ସୁନା ଆଣୁଥିଲା ଓ ସେଥିରେ ଅଳଙ୍କାର ତିଆରି କରୁଥିଲା। ଏହି ଉପାୟରେ ସେ ଜୀବିକା ନିର୍ବାହ କରୁଥିଲା। ଦିନେ ତା'ପାଖରେ ଅଧିକ ସୁନା ରହି ଯାଇଥିଲା। ରାତିରେ ପହରା ଦେଉଥିବା ଜଣେ ସିପାହିକୁ ଏ କଥା ଜଣା ପଡ଼ିଗଲା। ସିପାହିଜଣକ ବଣିଆକୁ ମାରି ସୁନା ବାକ୍ସଟିକୁ ନେଇ ଯାଉଥିଲା। ସେତିକି ବେଳକୁ ସାମନା ଘରର ଭଦ୍ରବ୍ୟକ୍ତି ଜଣକ ପରିସ୍ରା କରିବାକୁ ଉଠିଥିଲେ। ସେ ସିପାହିକୁ ଧରିପକାଇ କହିଲେ—ତୁ ବାକ୍ସଟିକୁ ନେଇ କୁଆଡ଼େ ଯାଉଛୁ? ସିପାହି କହିଲା—ଚୁପ୍ ରହ, ପାଟି କରନା। ଏଥିରୁ କିଛି ସୁନା ତୁ ନେଇ ଯାଆ ଆଉ କିଛି ମୁଁ ନେଇ ଯାଉଛି। ଭଦ୍ରବ୍ୟକ୍ତି କହିଲେ—ମୁଁ କେମିତି ନେବି? ମୁଁ କ'ଣ ଚୋର! ସିପାହି କହିଲା—ଦେଖ୍, ତୁ ମୋ କଥା ମାନିଯାଆ, ନ ହେଲେ ଦୁଃଖ ଭୋଗିବୁ। ମାତ୍ର ଭଦ୍ରବ୍ୟକ୍ତି ଜଣକ ତାହା ପ୍ରତ୍ୟାଖ୍ୟାନ କଲେ। ତେଣୁ ସିପାହି ବାକ୍ସଟିକୁ ତଳେ ରଖି ଭଦ୍ରବ୍ୟକ୍ତିଙ୍କୁ ଧରିପକାଇ ଜୋର୍‌ରେ ହୁଇସିଲ୍ ବଜାଇ ଦେଲା। ହୁଇସିଲ୍ ଶୁଣି ଅନ୍ୟ ସ୍ଥାନର ସିପାହିମାନେ ସେଠାରେ ରୁଣ୍ଡ ହୋଇଗଲେ। ସେହି ସିପାହି ଜଣକ ସମସ୍ତଙ୍କୁ କହିଲା—ଇଏ ବଣିଆ ଘରୁ ବାକ୍ସ ନେଇ ପଳାଇ ଯାଉଥିଲା, ମୁଁ ଏହାକୁ ଧରିଛି। ସିପାହିମାନେ ଘରେ ପଶି ଦେଖିଲାବେଳକୁ ବଣିଆ ମରି ପଡ଼ିଛି। ସେମାନେ ଭଦ୍ରବ୍ୟକ୍ତିଙ୍କୁ ଧରି ନେଇ କୋର୍ଟରେ ହାଜିର କରାଇଲେ। ବିଚାରପତିଙ୍କ ଆଗରେ କଥା ପଡ଼ିବାରୁ ଭଦ୍ରବ୍ୟକ୍ତି ଜଣକ କହିଲେ "ଆଜ୍ଞା! ମୁଁ ମାରି ନାହିଁ, ସିପାହି ମାରିଛି।" ସିପାହିମାନେ ଏକ ସ୍ୱରରେ କହି ଉଠିଲେ, "ନା ନା ଇଏ ମାରିଛି, ଆମ୍ଭେମାନେ ନିଜେ ଏହାକୁ ରାତିରେ ଧରିଛୁ।"

ମୋକଦ୍ଦମା ଚାଲିଲା। ଶେଷକୁ ସେହି ଭଦ୍ରବ୍ୟକ୍ତିଙ୍କୁ ଫାଶୀଦଣ୍ଡ

ଆଦେଶ ହେଲା । ଫାଶୀ ଆଦେଶ ଶୁଣି ଭଦ୍ରବ୍ୟକ୍ତିଙ୍କ ମୁଖରୁ ବାହାରି ପଡ଼ିଲା—"ଦେଖ, ଏହା କେଡ଼େ ଘୋର ଅନ୍ୟାୟ! ଭଗବାନଙ୍କ ଦରବାରରେ ନ୍ୟାୟ ବୋଲି କିଛି ନାହିଁ! ମୁଁ ମାରି ନାହିଁ, ଅଥଚ ମୋତେ ଫାଶୀଦଣ୍ଡ ମିଳୁଛି ଆଉ ଯିଏ ମାରିଛି, ସେ ନିର୍ଦ୍ଦୋଷରେ ମୁକ୍ତ! ତାକୁ ସାମାନ୍ୟ ଅର୍ଥଦଣ୍ଡ ବି ନାହିଁ; ଏହା କେଡ଼େ ଅନ୍ୟାୟ!" ବିଗ୍ରରପତିଙ୍କ ଉପରେ ଏ କଥାର ଖୁବ୍ ପ୍ରଭାବ ପଡ଼ିଲା । ସେ ଭାବିଲେ ବାସ୍ତବରେ ଏ ସତ କହୁଛନ୍ତି । ଏ କଥାର ପ୍ରକୃତ ତଦନ୍ତ କରିବା ଉଚିତ । ଏପରି ଭାବି ବିଗ୍ରରପତି ଏକ ଷଡ଼ଯନ୍ତ୍ର ରଚନା କଲେ ।

ଷଡ଼ଯନ୍ତ୍ର ଅନୁସାରେ ସକାଳ ହେବାମାତ୍ରେ ଜଣେ ଲୋକ କାନ୍ଦି କାନ୍ଦି ଆସି କହିଲା—ଆଜ୍ଞା! ମୋ ଭାଇକୁ କିଏ ମାରି ଦେଇଛି! ଏହାର ତଦନ୍ତ କରାଯାଉ । ବିଗ୍ରରପତି ସେହି ସିପାହି ଓ ଭଦ୍ରବ୍ୟକ୍ତିଙ୍କୁ ଶବଟିକୁ ଆଣିବାକୁ ପଠାଇଲେ । ଦୁହେଁ ସେହି ଲୋକ ସଙ୍ଗରେ ଶବ ପାଖକୁ ଗଲେ । ଏକ ଖଟରେ ଶବ ଉପରେ କପଡ଼ା ଘୋଡ଼ାଇ ଦିଆଯାଇଥିଲା । ଗ୍ରରି ପାଖରେ ରକ୍ତ ପଡ଼ିଥିଲା । ଏ ଦୁହେଁ ଖଟଟିକୁ ଉଠାଇ ନେଲେ । ଅନ୍ୟ ଲୋକଟି ଖବର ଦେବା ବାହାନାରେ ଆଗରେ ଦୌଡ଼ି ପଳାଇଲା । ଶବଟିକୁ ନେଇ ଯାଉ ଯାଉ ବାଟରେ ସିପାହି ଭଦ୍ରବ୍ୟକ୍ତିଙ୍କୁ କହିଲା—"ଦେଖ୍, ସେ ଦିନ ଯଦି ତୁ ମୋ କଥା ମାନି ଯାଇଥାନ୍ତୁ, ତତେ ସୁନା ମିଳିଥାଆନ୍ତା ଆଉ ଫାଶୀଦଣ୍ଡ ମଧ୍ୟ ମିଳି ନ ଥାନ୍ତା, ଏବେ ସତ୍ୟର ଫଳ ପାଇଲୁ ତ?" ଭଦ୍ରବ୍ୟକ୍ତି ଜଣକ କହିଲେ—"ମୁଁ ତ ସତ୍ୟତା ଦୃଷ୍ଟିରୁ ନିଜର କର୍ମ କରିଥିଲି, ଫାଶୀ ହେଲା ତ ହେଲା! ହତ୍ୟା କଲୁ ତୁ ଆଉ ଫାଶୀରେ ଝୁଲିବି ମୁଁ! ହଉ, ଭଗବାନଙ୍କ ଦରବାରରେ ନ୍ୟାୟ ନାହିଁ!"

ଷଡ଼ଯନ୍ତ୍ର ଅନୁସାରେ ଖଟରେ ମଲାଭଳି ଶୋଇ ରହିଥିବା ଲୋକଟି ଏ ଦୁହିଙ୍କର କଥା ଶୁଣୁଥାଏ । ବିଗ୍ରରପତିଙ୍କ ଆଗରେ ଯେତେବେଳେ ଖଟ ରଖି ଦିଆଗଲା, ରକ୍ତାକ୍ତ କପଡ଼ା କାଢ଼ି ସେ ଲୋକଟି ଝାଡ଼ିଝୁଡ଼ି ହୋଇ ଠିଆ ହୋଇପଡ଼ିଲା ଏବଂ ରାସ୍ତାରେ ସିପାହି ଓ ଭଦ୍ରବ୍ୟକ୍ତିଙ୍କର ସମସ୍ତ ବାର୍ତ୍ତାଳାପ ବିଷୟ ବିଗ୍ରରପତିଙ୍କୁ କହିଲା । ଏହା ଶୁଣି ବିଗ୍ରରପତି ଚକିତ ହୋଇଗଲେ । ସିପାହି ମଧ୍ୟ ବୋକା ପାଲଟିଗଲା । ସିପାହିକୁ ଜେଲ୍‌ରେ ରଖାଗଲା । ମାତ୍ର ବିଗ୍ରରପତିଙ୍କ ମନ ସନ୍ତୁଷ୍ଟ ହେଲା ନାହିଁ । ଭଦ୍ରବ୍ୟକ୍ତିଙ୍କୁ ଏକାନ୍ତରେ ସେ ପଗ୍ରରିଲେ, "ଏ ଘଟଣାରେ ମୁଁ ତୁମକୁ

ନିର୍ଦ୍ଦୋଷ ମନେ କରୁଛି; କିନ୍ତୁ ସତ କୁହ, ଏ ଜନ୍ମରେ ତୁମେ କୌଣସି ହତ୍ୟା କରିଛ କି?'' ଭଦ୍ରବ୍ୟକ୍ତି ଜଣକ କହିଲେ—''ବହୁତ ଦିନ ତଳର କଥା । ଜଣେ ଦୁଷ୍ଟ ଲୋକ ଗୁପ୍ତ ଭାବରେ ମୋ ସ୍ତ୍ରୀ ପାଖକୁ ଆସୁଥିଲା । ମୁଁ ଏକାନ୍ତରେ ଦୁହିଙ୍କୁ ବହୁତ ବୁଝାଇଲି, ହେଲେ ସେମାନେ ଶୁଣିଲେ ନାହିଁ । ଦିନେ ରାତିରେ ସେ ମୋ ଘରେ ଥିଲା ଆଉ ମୁଁ ଅଚାନକ ଆସିଗଲି । ମୋର ରାଗ ଚଢ଼ିଗଲା । ମୁଁ ଖଣ୍ଡାରେ ତା'ମୁଣ୍ଡ କାଟି ତାକୁ ଘର ପଛପଟ ନଦୀରେ ଭସାଇ ଦେଲି । ଏ ଘଟଣା କାହାକୁ ଜଣା ନାହିଁ ।'' ଏହା ଶୁଣି ବିଚାରପତି କହିଲେ—''ତୁମକୁ ଅବଶ୍ୟ ଫାଶୀ ଦଣ୍ଡ ମିଳିବ । ମୁଁ ଆଶ୍ଚର୍ଯ୍ୟ ହୋଇ ଭାବୁଥିଲି ଯେ ମୁଁ ତ କାହାରିଠାରୁ ଲାଞ୍ଚ ନେଇ ନାହିଁ, କେବେ ବିଶ୍ୱାସଘାତକତା କରି ନାହିଁ, ପୁଣି ମୋ ଦ୍ୱାରା ଏହାଙ୍କୁ ଫାଶୀ ଆଦେଶ ହେଲା କିପରି? ଏବେ ମୁଁ ସନ୍ତୁଷ୍ଟ ହେଲି । ସେହି ପାପର ଫଳ ତୁମକୁ ଏବେ ଭୋଗିବାକୁ ହେବ । ସିପାହିକୁ ମଧ୍ୟ ଫାଶୀଦଣ୍ଡ ମିଳିବ ।''

[ଭଦ୍ରବ୍ୟକ୍ତି ଜଣକ ଚୋରି କରିଥିବା ସିପାହିକୁ ଧରି ନିଜର କର୍ତ୍ତବ୍ୟ ପାଳନ କରିଥିଲେ । ତଥାପି ତାଙ୍କୁ ଯେଉଁ ଦଣ୍ଡ ମିଳିଲା, ତାହା ତାଙ୍କ କର୍ତ୍ତବ୍ୟପାଳନର ଫଳ ନୁହେଁ, ବରଂ ପୂର୍ବରୁ କରିଥିବା ହତ୍ୟାର ଫଳ । ମନୁଷ୍ୟର ନିଜକୁ ରକ୍ଷା କରିବାର ଅଧିକାର ରହିଛି; କାହାକୁ ମାରିବାର ଅଧିକାର ନାହିଁ । ରାଜାଙ୍କର ଓ ରକ୍ଷାକାର୍ଯ୍ୟରେ ନିଯୁକ୍ତ କ୍ଷତ୍ରିୟଙ୍କର ମାରିବାର ଅଧିକାର ଅଛି । କର୍ତ୍ତବ୍ୟପାଳନ କରିବାରୁ ଭଦ୍ରବ୍ୟକ୍ତିଙ୍କୁ ପୂର୍ବ ହତ୍ୟାରୂପକ ପାପର ଫଳ ଏହିଠାରେ ମିଳିଗଲା ଏବଂ ପରଲୋକର ଭୟଙ୍କର ଦଣ୍ଡରୁ ତାଙ୍କୁ ମୁକ୍ତି ମିଳିଲା । ଏହିଠାରେ ଯେଉଁ ଦଣ୍ଡ ଭୋଗ ହୋଇଯାଏ, ସେଥିରୁ କମ୍‌ରେ ତ୍ରାହି ମିଳେ, ଅଳ୍ପେକେ ପ୍ରାୟଶ୍ଚିତ୍ତ ହୋଇଯାଏ, ନଚେତ୍ ପରଲୋକରେ ବଡ଼ ଭୟଙ୍କର (ସୁଧ ସହିତ) ଦଣ୍ଡ ଭୋଗିବାକୁ ପଡ଼େ ।]

ଏହି କାହାଣୀରୁ ଜଣାଯାଏ ଯେ, ମନୁଷ୍ୟର କେଉଁ ପାପର ଫଳ କେବେ ମିଳିବ ତାହାର କୌଣସି ଠିକଣା ନାହିଁ । ଭଗବାନଙ୍କ ବିଧାନ ଅତି ବିଚିତ୍ର । ପୂର୍ବ ପୁଣ୍ୟର ପ୍ରାବଲ୍ୟ ଥିବାପର୍ଯ୍ୟନ୍ତ ଉଗ୍ରପାପର ଫଳ ମଧ୍ୟ ତତ୍କାଳ ମିଳେ ନାହିଁ । ପୂର୍ବର ପୁଣ୍ୟ ଶେଷ ହୋଇଗଲେ ସେହି ପାପର ପାଳି ଆସେ । ଏ ଜନ୍ମରେ ହେଉ ବା ପରଜନ୍ମରେ ହେଉ, ପାପର ଫଳ (ଦଣ୍ଡ) ଅବଶ୍ୟ ଭୋଗିବାକୁ ପଡ଼ିବ ।



## ୩. ଆଖିରୋଗ ଓ ପେଟରୋଗ

ପ୍ରତ୍ୟେକ ମନୁଷ୍ୟଙ୍କ ଠାରେ ଦୁଇଟି ରୋଗ ରହିଛି—ଆଖିରୋଗ ଓ ପେଟରୋଗ। ଆଖିରୋଗ କ'ଣ?—

**ଏହି ଦୁନିଆରେ ଗୋଟିଏ ଅନ୍ଧାର, ସବୁରି ଆଖିରେ ଘୋଟିଛି।**
**ଯେଉଁ କାରଣରୁ ବୁଝି ହେଉ ନାହିଁ, କିଏ ମୁଁ, କେଉଁଠୁ ଆସିଛି।**
**କେଉଁ ଦିଗେ ମୋତେ ଯିବାକୁ ପଡିବ, କାହାକୁ ଦେଖି ମୁଁ ଭୁଲିଛି।**
**ଏହି ଦୁନିଆର କିଏସେ ମାଲିକ, କିଏସେ ଏ ମାୟା ରଚିଛି।**

ଏବଂ ପେଟରୋଗ କ'ଣ?—

**ଏହି ଦୁନିଆରେ ଗୋଟିଏ କୂଅ ସେ, ତା'ଗଭୀର ମାପି ନ ହୁଏ।**
**ଯାହାକୁ ଭରିବା ପାଇଁ ପ୍ରାଣୀ ନିତି, ଦେଶ ବିଦେଶ ବୁଲୁଥାଏ।**
**ଦାରିଦ୍ର୍ୟ ଭୟରେ ପର ଘରେ ଖଟେ, ସେବା କରି କରି ମରିଯାଏ।**
**ଭଜନ ସାଧନ ଈଶ୍ୱର ଚିନ୍ତନ ସବୁକିଛି ସେ ଭୁଲିଯାଏ।**

ଏ ବିଷୟରେ ଗୋଟିଏ କାହାଣୀ ଅଛି। ଜଣେ ବୈଦ୍ୟ ଥିଲେ। ତାଙ୍କ ପାଖକୁ ଜଣେ ରୋଗୀ ଆସିଲା। ସେ ବୈଦ୍ୟଙ୍କୁ କହିଲା, "ମୋର ଆଖି ବିନ୍ଧାଛିଟିକା କରୁଛି ଓ ପେଟରେ ଯନ୍ତ୍ରଣା ହେଉଛି।" ବୈଦ୍ୟ ତାକୁ ଶୁଆଇ ଦେଇ ତା' ପେଟ ଓ ଆଖି ପରୀକ୍ଷା କଲେ। ସେତିକି ବେଳକୁ ଆଉ ଜଣେ ରୋଗୀ ଆସି କହିଲା—ଆଜ୍ଞା! ମୋର ଆଖି ବିନ୍ଧାଛିଟିକା କରୁଛି ଓ ପେଟରେ ମଧ୍ୟ ଯନ୍ତ୍ରଣା ହେଉଛି। ବୈଦ୍ୟ ଭାବିଲେ, ଏମିତି କଣ ହେଲା ଯେ ସମସ୍ତଙ୍କୁ ଏକା ରୋଗ। ବୈଦ୍ୟ ସେହି ଦୁଇଜଣଙ୍କ ପାଇଁ ଔଷଧ ଲେଖିଦେଇ କହିଲେ—କମ୍ପାଉଣ୍ଡରଠାରୁ ଔଷଧ ନେଇ ଆସ। କମ୍ପାଉଣ୍ଡର ଦୁଇଜଣଙ୍କୁ ଦୁଇଟି ଲେଖାଏଁ ପୁଡ଼ିଆ ବାନ୍ଧି ଦେଲେ। ଗୋଟିଏ ଲେଖାଏଁ ପୁଡ଼ିଆ ଆଖି ପାଇଁ ଓ ଗୋଟିଏ ଲେଖାଏଁ ପୁଡ଼ିଆ ପେଟ ପାଇଁ। ବୈଦ୍ୟ ଦୁହିଙ୍କୁ ବୁଝାଇ ଦେଲେ, "ଶୁଣ, ଏ ପୁଡ଼ିଆଟିକୁ ଆଖିରେ ପକାଇବ। ଶୋଇଲାବେଳେ ଏହାକୁ ଆଖିରେ ପକାଇ ବାରମ୍ବାର ଆଖି ମିଞ୍ଜି ମିଞ୍ଜି କରିବ। ଏହାଦ୍ୱାରା

ଆଖିରୁ ଗରମ ଗରମ ପାଣି ବାହାରିଯିବ । ତା'ପରେ ଶୋଇ ପଡ଼ିବ । ଏଥିରେ ଆଖି ଭଲ ହୋଇଯିବ । ଦ୍ୱିତୀୟ ପୁଡିଆଟି ପେଟ ପାଇଁ । ଏହାକୁ ଦୁଇ ଶହ ଗ୍ରାମ୍ ପାଣିରେ ପକାଇ ଗରମ କରି ଫୁଟାଇବ । ଯେତେବେଳେ ଫୁଟିଫୁଟି ୫୦ ଗ୍ରାମ୍ ପାଣି ରହିଯିବ, ସେତେବେଳେ ଛାଣି ପିଇଦେବ । ଏହାଦ୍ୱାରା ପେଟ ଭଲ ହୋଇଯିବ ଏବଂ ଝାଡ଼ା ସଫା ହୋଇଗଲେ ଆଖିକୁ ମଧ୍ୟ ଉପକାର ମିଳିବ ।''

ରୋଗୀ ଦୁଇଜଣ ଔଷଧ ନେଇ ନିଜ ନିଜ ଘରକୁ ଗଲେ । ଦୁହିଙ୍କ ମଧ୍ୟରୁ ଜଣେ ବୈଦ୍ୟଙ୍କ କହିବା ଅନୁସାରେ ଔଷଧ ବ୍ୟବହାର କଲା । ଆଖିର ଔଷଧ ଆଖିରେ ପକାଇଲା ଏବଂ ପେଟର ଔଷଧ ପାଣିରେ ଫୁଟାଇ ସାରି ଛାଣି ସେହି ପାଣି ପିଇଲା । ମାତ୍ର ଅନ୍ୟ ଜଣକ ପୁଡ଼ିଆକୁ ବଦଳାଇ ଦେଲା! ସେ ପେଟର ଔଷଧ ଆଖିରେ ପକାଇ ଦେଲା ଓ ଆଖିର ଔଷଧକୁ ପାଣିରେ ଫୁଟାଇ ପିଇଦେଲା । ଆଖିରେ ତ ଗୁଣ୍ଡି ଟିକିଏ ପଡ଼ିଗଲେ ବିନ୍ଧାଛିଟିକା ହୁଏ, ପୁଣି ସେ ପେଟ ଔଷଧ ନେଇ ଆଖିରେ ପକାଇଦେଲା! ଫଳରେ ଆଖି ଆହୁରି ବେଶୀ ବିନ୍ଧିଲା! ଆଖିର ଔଷଧ ସ୍ୱାଭାବିକଭାବେ ଥଣ୍ଡା । ତାହା ପେଟରେ ପଡ଼ିଲା ପରେ ପେଟ ଯନ୍ତ୍ରଣା ମଧ୍ୟ ବଢ଼ିଗଲା! ସେ ମନେ ମନେ ବୈଦ୍ୟକୁ ମନଇଛା ଗାଳି ଦେଇ କହିଲା, ''ମୁଁ କଣ ତୋ ବୋପାକୁ ମାରିଥିଲି? ସେ ତ ତା'ର ମରଣବେଳ ଆସିବାରୁ ମଲା । ପୁଣି ତୁ ମୋତେ ଏମିତି ହଇରାଣ କରି କେଉଁ ଦିନର ପ୍ରତିଶୋଧ ନେଉଛୁ!'' ପର ଦିନ ଡାକ୍ତରଖାନା ଖୋଲିବା ପୂର୍ବରୁ ସେ ଯାଇ ସେଠାରେ ହାଜର । ବୈଦ୍ୟ ଆସିଲେ ଏବଂ ଡାକ୍ତରଖାନା ଖୋଲି ତାକୁ ପଚ୍ଚରିଲେ— ଦେହ କେମିତି ଅଛି? ଭଲ ଅଛି ତ?

ସେ କହିଲା—କେମିତି ଅଛି କ'ଣ ପଚ୍ଚରୁଛ?

ବୈଦ୍ୟ କହିଲେ—ଆରେ, ତୁମର କ'ଣ ହେଲା କୁହ!

ସେ କହିଲା—ହେବ ଆଉ କ'ଣ, ଯାହା ତୁମେ କଲ, ସେଇଆ ହେଲା!

ବୈଦ୍ୟ କହିଲେ—ମୁଁ କ'ଣ କଲି?

ସେ କହିଲା—ଏମିତି ଔଷଧ ଦେଲ ଯେ, ମୋ ଆଖି ବେଶୀ ବିନ୍ଧାଛିଟିକା କଲା ଏବଂ ପେଟର ମଧ୍ୟ ଯନ୍ତ୍ରଣା ଅଧିକ ହେଲା! ସଫା ସଫା କହି ଦେଲନି ଯେ, ମୁଁ ଔଷଧ ଦେବିନି! ମୋ ପାଖରେ ଅଧିକ ପଇସା ନ ଥିଲା ବୋଲି କ'ଣ ଏମିତି ଓଲଟା ଔଷଧ ଦେବ। ବୈଦ୍ୟ କହିଲେ—ଯନ୍ତ୍ରଣା ବଢ଼ିଗଲା କେମିତି? ଅବଶ୍ୟ, କାହା ଦେହରେ ଔଷଧ ଶୀଘ୍ର କାମ କରେ ତ ଆଉ କାହା ଦେହରେ ଶୀଘ୍ର କାମ କରେ ନାହିଁ; ଏହା ତ ନିଜ ନିଜର ପ୍ରକୃତି ଅନୁସାରେ ହୋଇପାରେ, କିନ୍ତୁ ଯନ୍ତ୍ରଣା ବଢ଼ିବାର ତ କୌଣସି କାରଣ ନାହିଁ!

ସେ କହିଲା—ମୁଁ ତ ନିଜେ ଭୁକ୍ତଭୋଗୀ, ମୋର ଯନ୍ତ୍ରଣା ବଢ଼ିଗଲା! ଏତିକିରେ ଅନ୍ୟ ରୋଗୀ ଜଣକ ଆସି ପହଞ୍ଚିଲା। ବୈଦ୍ୟ ପଗ୍ଚରିଲେ—କୁହ ଭାଇ, ତୁମ ଦେହ କେମିତି ଅଛି? ସେ କହିଲା—ଆଜ୍ଞା! ବହୁତ ଭଲ। ଥରେ ଦୁଇଥର ପତଳା ଝାଡ଼ା ହୋଇଗଲା, ଏବେ ପେଟ ଠିକ୍ ଅଛି ଓ ଆଖି ମଧ୍ୟ ଭଲ ହୋଇଯାଇଛି। ଏହା ଶୁଣି ପୂର୍ବରୁ ଆସିଥିବା ରୋଗୀ ଜଣକ କହିଲା—ହଇହୋ! ଇଏ ଧନୀ ଲୋକ ବୋଲି ଏହାଙ୍କୁ ଭଲ ଔଷଧ ଦେଇଛ ଆଉ ମତେ ଖରାପ ଔଷଧ ଦେଇଛ! ବୈଦ୍ୟ କହିଲେ—ଖରାପ ଔଷଧ କେତେବେଳେ ଦେଲି? ଯେଉଁ ଔଷଧ ୟାଙ୍କୁ ଦେଇଥିଲି, ତୁମକୁ ମଧ୍ୟ ସେଇଆ ଦେଇଥିଲି। ତୁମ ପୁଡ଼ିଆ ଦେଖାଇଲ? ସେ ପକେଟରୁ ଔଷଧ ପୁଡ଼ିଆଟିକୁ କାଢ଼ି ବୈଦ୍ୟଙ୍କ ଆଗରେ ପକାଇ ଦେଲା ଏବଂ କହିଲା—ଏଇ ପୁଡ଼ିଆ। ବୈଦ୍ୟ ପଗ୍ଚରିଲେ—ଆର ପୁଡ଼ିଆଟି? ସେ କହିଲା—ଆର ପୁଡ଼ିଆଟିକୁ ତ ମୁଁ ପାଣିରେ ଫୁଟାଇ ପିଇ ଦେଇଛି! ଏହି ପୁଡ଼ିଆଟିକୁ ଆଖିରେ ପକାଇଥିଲି, କିନ୍ତୁ ଅଧିକ ଔଷଧ ଥିବାରୁ ଏତକ ବଳିପଡ଼ିଲା। ବୈଦ୍ୟ ବିଗିଡ଼ି ଯାଇ କହିଲେ—ଏ ଲୋକଟାକୁ ଏଠୁ ବାହାର କରିଦେଲ ରେ! ନିଜେ ଓଲଟା ଔଷଧ ଖାଇଛି, ଆଉ କହୁଛି କଣ ନା, ତୁମେ ମୋର ରୋଗ ବଢାଇ ଦେଲ!

ଏଇଭଳି ଭାବରେ ଆମ୍ଭେମାନେ ସମସ୍ତେ ହେଲେ ରୋଗୀ! ଆମର ଆଖି ରୋଗଟି ହେଲା ଆମକୁ ପ୍ରକୃତ କଥା କ'ଣ ଜଣା ପଡୁନି । ଆମେ ନିଜେ ଜାଣି ନାହୁଁ କି ଅନ୍ୟର କଥା ମାନୁ ନାହୁଁ । ଯାହା କିଛି ଅଧାକାଣ୍ଡିଆ ଜାଣିଛୁ ତାହାକୁ ପୂର୍ଣ୍ଣ ମନେ କରୁଛୁ ଯେ, ଏହା ହିଁ ଠିକ୍ । ପେଟ ରୋଗଟି ହେଲା ପେଟ କେବେ ପୂରୁ ନାହିଁ! ଦରିଦ୍ରର ପେଟ ମଧ୍ୟ ପୂରୁ ନାହିଁ ଏବଂ ଲକ୍ଷପତି ଓ କୋଟିପତିର ପେଟ ମଧ୍ୟ ପୂରୁ ନାହିଁ । ଯେତେ ମିଳିଲେ ବି କହୁଛୁ, କ'ଣ କରିବା, ଏତିକିରେ କାମ ଚଳୁନି । ଏହି ଦୁଇଟି ରୋଗ ପାଇଁ ଭଗବାନ ଆମକୁ ଦୁଇଟି ପୁଡ଼ିଆ ଦେଇଛନ୍ତି—ପ୍ରାରବ୍ଧ ଓ ପୁରୁଷାର୍ଥ । ଆଖିରୋଗ ପାଇଁ 'ପୁରୁଷାର୍ଥ' ଓ ପେଟରୋଗ ପାଇଁ 'ପ୍ରାରବ୍ଧ' । ପୁରୁଷାର୍ଥ ଦ୍ୱାରା ଓ ସତ୍‌ସଙ୍ଗ, ସ୍ୱାଧ୍ୟାୟ, ବିବେକ ତଥା ବିଗ୍ଚର ଦ୍ୱାରା ଆଖିରୋଗ ଦୂର ହେବ ଏବଂ 'ଭାଗ୍ୟରେ ଯାହା ଥିବ, ତାହା ହିଁ ମିଳିବ'* ଏପରି ପ୍ରାରବ୍ଧ ଉପରେ ବିଶ୍ୱାସ ରଖି ନିଜର କର୍ତ୍ତବ୍ୟ ପାଳନ କଲେ ପେଟରୋଗ ଦୂର ହେବ ।

ପ୍ରାରବ୍ଧ ଅଳସୁଆ ଓ କର୍ମକୋଢ଼ି କରାଇବା ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ଶୋକ ଓ ଚିନ୍ତା ଦୂର କରିବା ପାଇଁ ଉଦ୍ଦିଷ୍ଟ । ଧରାଯାଉ ପୁଅ ରୋଗରେ ପଡ଼ିଲା । ତେବେ ନିଜର ସାମର୍ଥ୍ୟ ଅନୁସାରେ ଭଲଭାବେ ଚିକିତ୍ସା କରୁ କରୁ ଯଦି ପୁଅ ମରିଯାଏ, ତା'ହେଲେ ଏ କଥାକୁ ନେଇ ମନରେ ଚିନ୍ତା, ଶୋକ ଓ ଦୁଃଖ ହେବ ନାହିଁ ଯେ, ମୁଁ ନିଜ ତରଫରୁ

---

* ଯଦ୍ ଭାବି ନ ତଦ୍ଭାବି ଭାବି ଚେନ୍ନ ତଦନ୍ୟଥା ।
ଇତି ଚିନ୍ତାବିଷଘ୍ନୋଽୟମଗଦଃ କିଂ ନ ପୀୟତେ ।।

"ଯାହା ହେବାର ନ ଥିବ, ତାହା କଦାପି ହେବ ନାହିଁ ଏବଂ ଯାହା ହେବାର ଥିବ, ତାହା ଅବଶ୍ୟ ହେବ । ଚିନ୍ତାରୂପୀ ବିଷୟକୁ ବିନଷ୍ଟ କରିବାର ଏହି ଔଷଧକୁ କାହିଁକି ପାନ ନ କରିବା?"

ପ୍ରାରବ୍ଧ ପହଲେ ରଚ୍ୟା, ପୀଛେ ରଚ୍ୟା ସରୀର ।
ତୁଲସୀ ଚିନ୍ତା କ୍ୟୋଁ କରେ ଭଜ ଲେ ଶ୍ରୀରଘୁବୀର ।।
ହୋଇହି ସୋଇ ଜୋ ରାମ ରଚି ରାଖା । କୋ କରି ତର୍କ ବଢ଼ାୱୈ ସାଖା ।।
(ମାନସ, ବାଲ. ୫୨ । ୪)

ଚିକିତ୍ସାରେ ଅବହେଳା କଲି। ପୁଅ ତ ତା'ର ପ୍ରାରବ୍ଧ ଅନୁସାରେ ଅବଶ୍ୟ ମରିବ; କିନ୍ତୁ ନିଜର ପୁରୁଷାର୍ଥରେ ଉଣା ରଖିଲେ ଚିନ୍ତା, ଶୋକ ଓ ଦୁଃଖ ହେବ ଯେ, ମୁଁ ଠିକ୍‌ଭାବେ ନିଜର କର୍ତ୍ତବ୍ୟ ପାଳନ କଲି ନାହିଁ! ତେଣୁ ଯେଉଁମାନେ 'କରିବା'ରେ ସାବଧାନ ଓ 'ହେବା'ରେ ପ୍ରସନ୍ନ ରହନ୍ତି, ସେମାନଙ୍କର ଆଖିରୋଗ ଭଲ ହୋଇଯାଏ ଓ ପେଟରୋଗ ମଧ୍ୟ ଭଲ ହୋଇଯାଏ। କିନ୍ତୁ ଯେଉଁମାନେ ଓଲଟା ପୁଡ଼ିଆ ପ୍ରୟୋଗ କରନ୍ତି ଅର୍ଥାତ୍ ଆଖିରୋଗ ପାଇଁ ପ୍ରାରବ୍ଧ ଓ ପେଟରୋଗ ପାଇଁ ପୁରୁଷାର୍ଥ ଲଗାନ୍ତି, ସେମାନଙ୍କର ଏ ଦୁଇଟିଯାକ ରୋଗ ବଢ଼ିଯାଏ। ଏପରି ଲୋକମାନଙ୍କୁ ସତ୍ସଙ୍ଗ, ସ୍ୱାଧ୍ୟାୟ, ଭଜନ, ଧ୍ୟାନ ପ୍ରଭୃତି କରିବା ପାଇଁ କହିଲେ, ସେମାନେ କହନ୍ତି—କ'ଣ କରିବୁ ସ୍ୱାମୀଜୀ, ଆମର ତ ଭାଗ୍ୟରେ ଲେଖା ନାହିଁ! ପ୍ରାରବ୍ଧ ଅନୁସାରେ ମିଳୁଥିବା ଧନ ପାଇଁ ଦିନରାତି ପୁରୁଷାର୍ଥ କରୁଛନ୍ତି। ସବୁ ପୁରୁଷାର୍ଥ ପେଟ ପାଇଁ ଲଗାଇ ଦେଉଛନ୍ତି, ଆଖି ପାଇଁ କିଛି କରୁ ନାହାନ୍ତି। ଭଗବାନଙ୍କ ନାମଜପ କରିବାକୁ କହିଲେ, ସେମାନେ କହନ୍ତି—ନାମଜପ କେମିତି କରିବୁ, ପାଟିରେ ଶହେ କିଲୋ ଓଜନର ତାଲା ପଡ଼ିଛି। ନାମଜପ କରିବାକୁ ଆମ ଭାଗ୍ୟରେ ଲେଖା ନାହିଁ! ଭଗବାନଙ୍କର ତ ଏପରି ଇଚ୍ଛା, ଆମେ ବା କ'ଣ କରିବୁ? ଆମର ଦୋଷ କ'ଣ?

ଅନୁକୂଳ ବା ପ୍ରତିକୂଳ ପରିସ୍ଥିତି ପ୍ରାପ୍ତ ହେବା 'ପ୍ରାରବ୍ଧ'ର ଅଧୀନ ଏବଂ ପ୍ରାପ୍ତ ପରିସ୍ଥିତିକୁ ସଦୁପଯୋଗ କରିବା 'ପୁରୁଷାର୍ଥ'ର ଅଧୀନ। ତେଣୁ କର୍ତ୍ତବ୍ୟପାଳନ, ସତ୍ସଙ୍ଗ, ସ୍ୱାଧ୍ୟାୟ, ଭଜନ, ଧ୍ୟାନ ଆଦି କରିବାରେ ତ ମନୁଷ୍ୟ ସ୍ୱତନ୍ତ୍ର, କିନ୍ତୁ ଧନ ରୋଜଗାର କରିବାରେ ମନୁଷ୍ୟ ସ୍ୱତନ୍ତ୍ର ନୁହେଁ। ମନୁଷ୍ୟ ଏପରି ନିୟମ କରିପାରେ ଯେ—ମୁଁ ପ୍ରତିଦିନ ଏତିକି ଲେଖାଏଁ ମାଳା ଜପ କରିବି, ଏତିକି ସ୍ୱାଧ୍ୟାୟ କରିବି, କିନ୍ତୁ ଏପରି ନିୟମ କରେ ନାହିଁ ଯେ—ମୁଁ ପ୍ରତିଦିନ ଏତିକି ଟଙ୍କା ରୋଜଗାର କରିବି। କାରଣ ଭଜନ, ଧ୍ୟାନ ଆଦି କରିବା ପୁରୁଷାର୍ଥରେ ଅଧୀନ ଏବଂ ଧନ ରୋଜଗାର କରିବା ପ୍ରାରବ୍ଧର

ଅଧୀନ । କିନ୍ତୁ ମନୁଷ୍ୟ ଯେଉଁଠି ପୁରୁଷାର୍ଥ ଲଗାଇବା ଦରକାର ସେଠାରେ ପ୍ରାରବ୍ଧ ଲଗାଇ ଦେଲା ଏବଂ ଯେଉଁଠି ପ୍ରାରବ୍ଧ ଲଗାଇବା ଦରକାର ସେଠାରେ ପୁରୁଷାର୍ଥ ଲଗାଇ ଦେଲା । ଏହା ଫଳରେ ଦୁଇଟିଯାକ ରୋଗ ବଢ଼ିଗଲା । ପେଟରୋଗ ବଢ଼ିଯିବାରୁ ଜୀବନନିର୍ବାହର ଖର୍ଚ୍ଚ ବେଶୀ ବଢ଼ିଗଲା । ପାଠପଢ଼ାରେ, ଖିଆପିଆ କରିବାରେ, ବିଳାସବ୍ୟସନରେ ଓ ଗୃହଚଳନରେ ଖର୍ଚ୍ଚ ବଢ଼ିଗଲା । ଆହୁରି କହୁଛନ୍ତି ଷ୍ଟାଣ୍ଡାର୍ଡ଼ ଭଲ ହେବା ଆବଶ୍ୟକ । ମଣିଷ ସବୁ ପୁରୁଷାର୍ଥ ଷ୍ଟାଣ୍ଡାର୍ଡ ଭଲ କରିବାରେ, ପେଟ ପୂରାଇବାରେ ଲଗାଇ ଦେଉଛି; ଏଣେ ଭଗବାନ କ'ଣ, ସଂସାର କ'ଣ, ମୁଁ କିଏ, ମୋ ପକ୍ଷେ କ'ଣ କରିବା ଉଚିତ, ତାହା ଦେଖାଯାଉନି । ଦିନରାତି ଖାଲି 'ହେ ପଇସା! ହେ ପଇସା!!' କରୁଛି । 'ହେ ଭଗବାନ! ହେ ଭଗବାନ'!! କରିଲେ କୃତାର୍ଥ ହୋଇଯାଆନ୍ତା । ଯେତେ ତତ୍ପର ହୋଇ ଆମେ ଧନ ରୋଜଗାର କରୁଛେ, ସେତିକି ତତ୍ପର ହୋଇ ସାଧନା କଲେ କଲ୍ୟାଣ ହୋଇ ଯାଆନ୍ତା! କିନ୍ତୁ ସାଧନାର ଦଶା ଏମିତି ଯେ, ନିୟମ ପୂର୍ଣ୍ଣ ହେବାମାତ୍ରେ ଭାବୁଛେ, ଆଜିର ଜଞ୍ଜାଳ ସରିଗଲା! ମାଳାଜପ ସରିଗଲେ ଭାବୁଛେ, ଜେଲ୍‌ରୁ ମୁକ୍ତି ମିଳିଲା! ଏପଟେ ଦୋକାନରେ ଯଦି ସବୁଦିନ ଶହେ ଟଙ୍କା ରୋଜଗାର ହେଉଥାଏ ଏବଂ ଦିନେ ସକାଳୁ ସକାଳୁ ଶହେ ଟଙ୍କା ରୋଜଗାର ହୋଇଗଲା, ତଥାପି ଦିନ ସାରା ଦୋକାନ ଖୋଲା ରଖିବେ, କିନ୍ତୁ ଜପ ପୂର୍ଣ୍ଣ ହୋଇଗଲେ ମାଳାକୁ ବାନ୍ଧି ରଖିଦେବେ! ଏହା କ'ଣ? ଏହା ହେଲା ପୁଡ଼ିଆକୁ ଓଲଟା ପ୍ରୟୋଗ କରିବା । ଅତଏବ ଯେତିକି ମିଳିଛି, ସେଥିରେ ସନ୍ତୁଷ୍ଟ ରହନ୍ତୁ ଏବଂ ଯାହା ନ ମିଳିଛି, ତା'ର କାମନା କରନ୍ତୁ ନାହିଁ । ତତ୍ପର ହୋଇ ନିଜର କର୍ତ୍ତବ୍ୟ ପାଳନ କଲେ, ଅନ୍ୟମାନଙ୍କର ସେବା କଲେ ଏବଂ ଭଗବାନଙ୍କର ଭଜନ, ସ୍ମରଣ ତଥା ସତ୍ସଙ୍ଗ, ସ୍ୱାଧ୍ୟାୟ ଆଦି କଲେ ଆଖିର ଯନ୍ତ୍ରଣା ଭଲ ହୋଇଯିବ ଏବଂ ପେଟର ଯନ୍ତ୍ରଣା ମଧ୍ୟ ଭଲ ହୋଇଯିବ ।



# ୪. ସନ୍ଥଙ୍କୁ ଚିହ୍ନିବା କିପରି?

ସନ୍ଥମହାତ୍ମା ଓ ତାଙ୍କୁ ଚିହ୍ନିବା ବ୍ୟକ୍ତି ବହୁତ ଦୁର୍ଲଭ । ଆଜିକାଲି ଦମ୍ଭ, ପାଷଣ୍ଡ ଓ କୃତ୍ରିମତା ଏତେ ବଢ଼ିଗଲାଣି ଯେ, ପ୍ରକୃତ ସନ୍ଥମହାତ୍ମାଙ୍କୁ ଚିହ୍ନିବା କଠିନ ହୋଇ ପଡ଼ିଛି । କିନ୍ତୁ ପ୍ରକୃତ ଜିଜ୍ଞାସୁ ତାଙ୍କୁ ଜାଣିପାରେ । ଭଗବାନ କୃପା କଲେ ତାଙ୍କୁ ଚିହ୍ନି ହୁଏ । ତେବେ ତାଙ୍କୁ କିପରି ଚିହ୍ନିବା? ବାସ୍ତବରେ ସନ୍ଥମହାତ୍ମାଙ୍କୁ ପରୀକ୍ଷା କରିବା ସମ୍ଭବ ନୁହେଁ, ନିଜକୁ ହିଁ ପରୀକ୍ଷା କରାଯାଇ ପାରେ ।

ଏ ବିଷୟରେ ଗୋଟିଏ କାହାଣୀ ଅଛି । ଜଣେ ଯୁବକ ରାଜା ଥିଲେ । ଥରେ ସେ ନିଜ ରାଜ୍ୟର ବୟୋଜ୍ୟେଷ୍ଠ ଓ ବୁଦ୍ଧିମାନ୍ ଲୋକମାନଙ୍କୁ ଡାକି ପଚ୍ଚରିଲେ, “ଆପଣମାନେ ସତ କଥା କହନ୍ତୁ ଯେ ମୋ ବୁଢ଼ାବାପାଙ୍କ ସମୟରେ ରାଜ୍ୟ ଠିକ୍‌ଭାବେ ଚ୍ଚଳୁଥିଲା କିମ୍ବା ବାପାଙ୍କ ସମୟରେ ଠିକ୍‌ଭାବେ ଚ୍ଚଳୁଥିଲା ଅଥବା ଏବେକାର ରାଜ୍ୟ ଠିକ୍‌ଭାବରେ ଚ୍ଚଳୁଛି? ଆପଣମାନେ ତିନି ଜଣଙ୍କର ରାଜୁତି ଦେଖିଛନ୍ତି, କାହାର ରାଜୁତି ଶ୍ରେଷ୍ଠ?” ଏହା ଶୁଣି ସମସ୍ତେ ନୀରବ ରହିଲେ । ସେମାନଙ୍କ ଭିତରୁ ଜଣେ ବୃଦ୍ଧ କହିଲେ, “ମହାରାଜ! ଆମ୍ଭେମାନେ ଆପଣଙ୍କର ପ୍ରଜା, ଆପଣ ଆମର ସ୍ୱାମୀ । ଆପଣଙ୍କ ପ୍ରଶ୍ନର ନିର୍ଣ୍ଣୟ ଆମେ କିପରି କରି ପାରିବୁ? ଆମେ ଆପଣଙ୍କୁ ପରୀକ୍ଷା କରିବାକୁ ସମର୍ଥ ନୋହୁଁ, କିନ୍ତୁ ମୋତେ ପଚ୍ଚରିଲେ ମୁଁ ମୋ ନିଜ କଥା କହି ପାରିବି ।” ରାଜା କହିଲେ—ଠିକ୍ ଅଛି, ତୁମେ ତୁମ ନିଜ କଥା କୁହ । ବୃଦ୍ଧ ଜଣଙ୍କ କହିବା ଆରମ୍ଭ କଲେ— ମହାରାଜ! ଯେତେବେଳେ ଆପଣଙ୍କର ବୁଢ଼ାବାପା ରାଜୁତି କରୁଥିଲେ, ସେତେବେଳେ ମୁଁ କୋଡ଼ିଏ ବାଇଶି ବର୍ଷର ଭେଣ୍ଡା ଥିଲି, ହାତରେ ଗୋଟେ ଠେଙ୍ଗା ଧରୁଥିଲି । କୁସ୍ତିକସରତ, ବାଡ଼ିଖେଳ ଇତ୍ୟାଦିରେ ପାରଙ୍ଗମ ଥିଲି । ଦିନେ ବାଟରେ ଯାଉ ଯାଉ ମୁଁ କୌଣସି ଜଙ୍ଗଲରେ କେହି ଜଣେ କାନ୍ଦୁଥିବାର ଶୁଣିଲି । ଶବ୍ଦରୁ ଜଣାପଡ଼ିଲା ଯେ ଜଣେ

ସ୍ତ୍ରୀଲୋକ କାନ୍ଦୁଛି, କାରଣ ସ୍ତ୍ରୀଲୋକଙ୍କର ସ୍ୱର ପ୍ରାୟ କୋମଳ। ମୁଁ ସେଆଡ଼କୁ ଯାଇ ଦେଖିଲି ଯେ ସୁନ୍ଦର ବସ୍ତ୍ର ଓ ଆଭୂଷଣ ପିନ୍ଧିଥିବା ଜଣେ ସ୍ତ୍ରୀଲୋକ କାନ୍ଦୁଛି। ମୁଁ ପଚ୍ଚାରିଲି—"ତୁମେ କାନ୍ଦୁଛ କାହିଁକି?" ସେ ମୋତେ ଦେଖି ଡରିଗଲା। ମୁଁ ତାକୁ ଆଶ୍ୱାସନା ଦେଇ କହିଲି—"ରେ ମା! ଡରିବାର କୌଣସି କାରଣ ନାହିଁ, କ'ଣ ହୋଇଛି କହ।" ସେ ମୋତେ କହିଲା—"ମୁଁ ମୋ ସମ୍ପର୍କୀୟମାନଙ୍କ ସହିତ ବାପଘରୁ ଶାଶୁଘରକୁ ଯାଉଥିଲି। ରାସ୍ତାରେ ଡାକୁ ଘେରିଗଲେ ଏବଂ ଧସ୍ତାଧସ୍ତି ଆରମ୍ଭ ହୋଇଗଲା। ମୁଁ ଭୟରେ ଜଙ୍ଗଲକୁ ପଳାଇ ଆସିଛି। ମୋତେ ଜଣା ନାହିଁ ଯେ ସେମାନଙ୍କର ଅବସ୍ଥା କ'ଣ ହେଲା? ଏବେ ମୁଁ କୁଆଡ଼େ ଯିବି, କ'ଣ କରିବି? ଶାଶୁଘର କୁଆଡ଼େ ଓ ବାପଘର କୁଆଡ଼େ ମୋତେ ଜଣା ନାହିଁ।" ମୁଁ ସେହି ସ୍ତ୍ରୀଲୋକକୁ ତାଙ୍କ ଶାଶୁଘର କୋଉ ଗାଆଁ ବୋଲି ପଚ୍ଚାରିବାରୁ ସେ ଗାଆଁ ନାଆଁ କହିଲା। ମୁଁ କହିଲି—"ତୁମ ଶାଶୁଘର ଏଇ ପାଖରେ, ମୁଁ ସେଠାରେ ଛାଡ଼ିଦେଇ ଆସିବି, ଡର ନାହିଁ।" ମୁଁ ତାକୁ ତା'ର ଶଶୁରଙ୍କ ନାଆଁ ପଚ୍ଚାରିବାରୁ ସେ ତା'ଶଶୁରଙ୍କ ନାମ ଲେଖିଦେଲା। ମୁଁ କହିଲି—"ମୁଁ ତୁମ ଶଶୁରଙ୍କୁ ଜାଣିଛି। ସେଠାରେ ଛାଡ଼ିଦେବି।"

ରାତି ହୋଇଯାଇଥିଲା। ମୁଁ ତାକୁ ନେଇ ତା'ଶଶୁର ଘରେ ପହଞ୍ଚିଲି। ସେଠାରେ ସମସ୍ତେ ଚିନ୍ତିତ ଥିଲେ ଯେ "ଆମେ ତ ଡାକୁମାନଙ୍କ ସାଥିରେ ଧସ୍ତାଧସ୍ତି କରିବାରେ ମାତିଗଲେ, ବୋଧହୁଏ ସେମାନେ ଆମ ବୋହୂକୁ ମାରି ଦେଇଥିବେ! ସେ ବହୁତ ମୂଲ୍ୟବାନ୍ ଗହଣା ପିନ୍ଧିଥିଲା। ସେଗୁଡ଼ିକୁ ବୋଧେ ଛଡ଼ାଇ ନେଇଥିବେ; ଏବେ ତାକୁ ପାଇବା କିପରି?" ଇତ୍ୟାଦି। ସେହି ସମୟରେ ନିଜର ବୋହୂକୁ ଦେଖି ସେମାନେ ଅତି ଖୁସି ହେଲେ। ସେହି ସ୍ତ୍ରୀଲୋକ ଜଣଙ୍କ ଘରର ଅନ୍ୟ ସଦସ୍ୟମାନଙ୍କୁ କହିଲା—"ଏ ମୋତେ ବାପା ପରି ଆଦର ଓ ସ୍ନେହର ସହ ଏଠାରେ ପହଞ୍ଚାଇ ଦେଲେ।" ଘରଲୋକେ ବାଧ୍ୟ କରି ମୋତେ ଚ୍ଚରି ପାଞ୍ଚ ଶହ ଟଙ୍କା ଦେଉଥିଲେ। କିନ୍ତୁ ମୁଁ କହିଲି—"ଏ

କାମ ମୁଁ ଟଙ୍କା ପାଇଁ କରି ନାହିଁ, ମଜୁରି କରି ନାହିଁ। ମୁଁ ମୋର କର୍ତ୍ତବ୍ୟ ମନେକରି ଏପରି କରିଛି।'' ସେ ବହୁତ ବାଧ୍ୟ କରୁଥିଲେ ମଧ୍ୟ ମୁଁ କିଛି ନ ନେଇ ସେଠାରୁ ବିଦାୟ ନେଲି। ମୋତେ ଏଥିପାଇଁ ବଡ଼ ଖୁସି ଲାଗିଲା ଯେ ଯାହାହେଉ ମୋ ଦ୍ୱାରା ଜଣେ ଅବଳାର ସେବା ହୋଇ ପାରିଲା। ଏହା ଆପଣଙ୍କ ବୁଢ଼ାବାପାଙ୍କ ରାଜୁତି ସମୟରେ ଘଟଣା।

ଦୀର୍ଘ ସମୟ ବିତିଯିବା ପରେ ମୋର ବ୍ୟବସାୟରେ କ୍ଷତି ହୋଇଗଲା ଏବଂ ପାଖରେ ଟଙ୍କାପଇସା ମଧ୍ୟ ନ ଥାଏ। ସେତେବେଳେ ମୋ ମନରେ ବିଗ୍ଭର ଆସିଲା ଯେ ମୁଁ ସେହି ସ୍ତ୍ରୀ ଲୋକଟିକୁ ଛାଡ଼ିଦେଇ ଭୁଲ୍ କଲି! ଗୋଟେ ଗ୍ଭପୁଡ଼ା ଦେଇଥିଲେ ଦଶ ପନ୍ଦର ହଜାର ଟଙ୍କାର ଗହଣା ମିଳିଯାଇ ଥାଆନ୍ତା। ଆଜି ଆଉ ପଇସାର ଅଭାବ ନ ଥାନ୍ତା। ତା'ଶଶୁର ମଧ୍ୟ ଟଙ୍କା ଦେଉଥିଲେ, ତାହା ବି ମୁଁ ଆଣିଲି ନାହିଁ ଆଉ ଏବେ ଭାବିଲେ କ'ଣ ହେବ, ସୁଯୋଗ ତ ହାତଛଡ଼ା ହୋଇଗଲାଣି। ଏହା ଆପଣଙ୍କ ବାପାଙ୍କ ରାଜୁତି ସମୟରେ କଥା। ମହାରାଜ! ଏବେକାର କଥା ତ ଆପଣଙ୍କ ଆଗରେ କହିବାକୁ ଲାଜ ମାଡୁଛି। କାରଣ ଆପଣ ମୋର ପିତା ସଦୃଶ। କିନ୍ତୁ ଆପଣ ପଗ୍ଭରୁଛନ୍ତି ଯେହେତୁ ବାଧ୍ୟ ହୋଇ କହୁଛି। ଏବେ ମୋ ମନରେ ଭାବନା ଆସୁଛି ଯେ, ସେହି ସ୍ତ୍ରୀଲୋକଟିକୁ ଡରାଇ-ଧମକାଇ ଅଥବା ବୁଝାଇସୁଝାଇ ଯଦି ମୁଁ ମୋର ସ୍ତ୍ରୀ କରି ରଖିଥାନ୍ତି, ତେବେ ଗହଣା ବି ମିଳିଯାଇ ଥାଆନ୍ତା ଏବଂ ଆଜିର ବୃଦ୍ଧାବସ୍ଥାରେ ପତ୍ନୀ ହିସାବରେ ସେ ମୋର ସେବା ମଧ୍ୟ କରିଥାଆନ୍ତା! ମହାରାଜ! ମୁଁ ମୋ ନିଜ କଥା କହିଦେଲି। ଆପଣଙ୍କ ରାଜ୍ୟ କିପରି ଗ୍ଭଲୁଛି, ତାହା ମୁଁ କିପରି ବା କହିବି!

ରାଜା ବୁଝିଗଲେ ଯେ ବୁଢ଼ା ବହୁତ ବୁଦ୍ଧିମାନ୍! ନିଜ କଥା କହି ଦର୍ଶାଇ ଦେଲା ଯେ ରାଜା କିପରି। ଯେପରି ରାଜା, ସେପରି ପ୍ରଜା— **'ଯଥା ରାଜା ତଥା ପ୍ରଜା।'** ବୁଢ଼ା ନିଜର ମନକଥା ବି କହିଦେଲା ଏବଂ ମୋତେ ରୁଷ୍ଟ ମଧ୍ୟ କଲା ନାହିଁ। ଏହିଭଳି ଭାବରେ ଆମେ ସବୁଙ୍କୁ ଚିହ୍ନି ପାରିବା ନାହିଁ ଯେ କିଏ କେଉଁ ପର୍ଯ୍ୟନ୍ତ ପହଞ୍ଚିଛି; କିନ୍ତୁ ତାଙ୍କ

ସାନ୍ନିଧ୍ୟକୁ ଗଲେ ଆମ ମନର ଆନ୍ଦୋଳନ ଶାନ୍ତ ହେବ, ନ ପଗ୍ଚରିଲେ ମଧ୍ୟ ସନ୍ଦେହମୋଚନ ହେବ, ମନ ସନ୍ତୁଷ୍ଟ ହେବ, ନିଜଠାରେ ଦୈବୀସମ୍ପଦର ଗୁଣଗୁଡ଼ିକ ପ୍ରକଟିତ ହେବ ଅର୍ଥାତ୍ ଦୟା, କ୍ଷମା, ଉଦାରତା, ତ୍ୟାଗ, ସନ୍ତୋଷ, ନୀତି, ଧର୍ମ ଆଦି ବୃଦ୍ଧି ପାଇବ। ଦୁର୍ଗୁଣ ଓ ଦୁଗ୍ଧର କମିଯିବ। ଯେଉଁ ମହାପୁରୁଷଙ୍କ ସାନ୍ନିଧ୍ୟ ଅଥବା ଦର୍ଶନରୁ ଏପରି ବିଶେଷତ୍ୱ ଆସେ, ସେ ଆମ ପାଇଁ ପୂଜ୍ୟ।

ଏତଦ୍ ବ୍ୟତୀତ ଆମେ ଗରିବ ହୋଇଥାଉ ବା ଧନୀ ହୋଇଥାଉ, ଯାହାଙ୍କ ମନରେ ଆମଠାରୁ କୌଣସି ସ୍ୱାର୍ଥ ହାସଲ କରିବାର ଭାବନା ନ ଥାଏ, ଧନୀ ଓ ଗରିବ ପ୍ରତି ଯେ ଆଦର ବା ଅନାଦର କରନ୍ତି ନାହିଁ, କାହାଠାରୁ କୌଣସି ସ୍ୱାର୍ଥ ସିଦ୍ଧ କରିବାକୁ ଗ୍ଚହାନ୍ତି ନାହିଁ, ତାଙ୍କୁ ଜ୍ଞାନଯୋଗ, ଭକ୍ତିଯୋଗ, କର୍ମଯୋଗ ଆଦି ବିଷୟରେ ପଚରାଗଲେ ସେ ତା'ଠାରୁ ଉଚ୍ଚସ୍ତରର କଥା କହି ଦିଅନ୍ତି। ଆମ ଦୃଷ୍ଟିରେ ସଗୁଣ, ନିର୍ଗୁଣ, ସାକାର ଓ ନିରାକାରର ତତ୍ତ୍ୱକୁ ଜାଣିଥିବା ବ୍ୟକ୍ତି ତାଙ୍କଠାରୁ ବଳି ଅନ୍ୟ କେହି ନ ଥାନ୍ତି—ଏପରି ମହାପୁରୁଷଙ୍କର ସାନ୍ନିଧ୍ୟ ପ୍ରାପ୍ତ ହେଲେ ବହୁତ ଉନ୍ନତି ହୁଏ।



# ୪. ଆଦର୍ଶ ବୋହୂ

ଜଣେ ମହାଜନ ଥିଲେ । ତାଙ୍କର ସାତ ପୁଅ । ସେହି ସାତ ଜଣଙ୍କ ମଧ୍ୟରୁ ଛଅ ଜଣଙ୍କର ବିବାହ ହୋଇ ସାରିଥିଲା । ଏବେ ସାନ ପୁଅର ବିବାହ ହେଲା । ଯେଉଁ ଝିଅ ସହିତ ତା'ର ବିବାହ ହେଲା, ସେହି ଝିଅର ମାଆବାପା ବୁଦ୍ଧିମାନ୍ ଥିଲେ । ମାଆବାପା ସେହି ଝିଅକୁ ସୁଶିକ୍ଷା ଦେଇଥିଲେ । ଝିଅର ଶାଶୁଘରେ ସମସ୍ତଙ୍କ ଭାବଧାରା ଭଲ ଥିଲା । ସାତ ଭାଇ ହୋଇଥିଲେ ମଧ୍ୟ ସମସ୍ତେ ଏକାଠି ଥିଲେ । ବଡ଼ କଥା ହେଲା ରନ୍ଧାବଢ଼ା କାମ ଘରର ସ୍ତ୍ରୀଲୋକମାନେ କରୁଥିଲେ, ରୋଷେଇଆ ରଖି ନ ଥିଲେ । ସ୍ତ୍ରୀମାନେ ରୋଷେଇ କଲେ ସେମାନେ ସ୍ୱାମୀ, ପୁଅ, ଶାଶୁ, ଶଶୁର ପ୍ରଭୃତିଙ୍କୁ ଆଦରରେ ଖାଇବାକୁ ଦିଅନ୍ତି । କିନ୍ତୁ ରୋଷେୟା ରୋଷେଇ କଲେ ସେ ଗ୍ୱକିରିଆ ହୋଇ କାମ କରେ । କେହି ନ ଖାଇଲେ ବା କମ୍ ଖାଇଲେ ସେ ଭାବେ, ଭଲ ହେଲା, ଅଳ୍ପ ଭାତ ରାନ୍ଧିବାକୁ ପଡ଼ିବ, ଜଞ୍ଜାଳ କମିଗଲା ।

ଘରେ ଛଅଜଣଯାକ ଯାଆ ସକାଳେ ଓ ସନ୍ଧ୍ୟାରେ ପାଳି କରି ରୋଷେଇ କରୁଥିଲେ । ଜଣେ ଯାଆର ତିନି ଦିନରେ ଥରେ ପାଳି ପଡ଼େ । କିନ୍ତୁ ସେମାନଙ୍କ ଭିତରେ ଟିକେ ଟଣାଟଣି ଲାଗୁଥିଲା । କେହି ରୋଗରେ ପଡ଼ିଗଲେ ଅନ୍ୟ ଜଣେ କହୁଥିଲା, "ମୋ ପାଳିରେ ତୁ ରୋଷେଇ କରିଥିଲୁ କି? ତା'ହେଲେ ତୋ ପାଳିରେ ମୁଁ କାହିଁକି କରିବି?" କିନ୍ତୁ ସାନ ବୋହୂ ମନରେ କାମ କରିବାକୁ ଭାରି ଉତ୍ସାହ । ଦିନେ ସକାଳୁ ସକାଳୁ ସେ ଗାଧୋଇ ପାଧୋଇ, ଭଲ ଲୁଗା ପିନ୍ଧି ରୋଷେଇଘରେ ରୋଷେଇ କରିବା ପାଇଁ ବସି ପଡ଼ିଲା । ବଡ଼ ଯାଆମାନେ କହିଲେ—"ତୁ ରୋଷେଇ କରୁଛୁ କାହିଁକି? ରୋଷେଇ କରିବା ପାଇଁ ଆମେମାନେ କ'ଣ କମ୍ ଅଛୁ ଯେ, ତୁ କରିବୁ?', ତଥାପି ସାନ ବୋହୂ ଉତ୍ସାହର ସହିତ ରନ୍ଧାରନ୍ଧି କରି ସମସ୍ତଙ୍କୁ ଖୁଆଇଲା । ସମସ୍ତେ ଖୁସି ହେଲେ ଯେ, ଆଜି ସାନ ବୋହୂ ଭଲ ରୋଷେଇ କରିଛି!

ସବୁ ଭାଇଙ୍କର ଅଲଗା ଅଲଗା କୋଠରି ଥିଲା । ଦିନବେଳେ ଶାଶୁ

ସାନ ବୋହୂର କୋଠରିକୁ ଯାଇ କହିଲା—"ବୋହୂ! ତୁ ସବା ସାନ, ତେଣୁ ସମସ୍ତେ ତୋତେ ସ୍ନେହ କରି ରଖିଛନ୍ତି। ପୁଣି ତୁ ରୋଷେଇ କରୁଛୁ କାହିଁକି? ତୋର ପରା ଛଅଜଣ ଯାଆ ଅଛନ୍ତି।" ସାନ ବୋହୂ କହିଲା—"ମାଆ! କେହି ଭୋକିଲା ଅତିଥି ଘରକୁ ଆସିଲେ ତାଙ୍କୁ ତୁମେ ଖାଇବାକୁ କାହିଁକି ଦେଉଛ?" ଶାଶୁ କହିଲା—"ଆରେ ମା'! ଏଥିରେ ବଡ଼ ପୁଣ୍ୟ ହୁଏ। ଘରକୁ କେହି ଭୋକିଲା ଅତିଥି ଆସିଲେ, ତାଙ୍କୁ ଖାଇବାକୁ ଦେବା ଗୃହସ୍ଥର ପ୍ରଧାନ ଧର୍ମ। ତାଙ୍କୁ ତୃପ୍ତି ଓ ସୁଖ ମିଳିଲେ ଦେଉଥିବା ଲୋକର ପୁଣ୍ୟ ହୁଏ।" ସାନ ବୋହୂ କହିଲା—"ଅନ୍ୟମାନଙ୍କୁ ଖୁଆଇଲେ ଯଦି ପୁଣ୍ୟ ହୁଏ, ଘର ଲୋକଙ୍କୁ ଖୁଆଇଲେ କ'ଣ ପାପ ଲାଗିବ? ଘର ତୁମର, ଅନ୍ନ ତୁମର, ବାସନକୁସନ ତୁମର, ସବୁ ଜିନିଷ ତୁମର। ମୁଁ ଟିକେ ପରିଶ୍ରମ କରି ରାନ୍ଧିବାଢ଼ି ସମସ୍ତଙ୍କୁ ଖୁଆଇଲେ ମୋତେ ପୁଣ୍ୟ ମିଳିବ କି ନାହିଁ? ସମସ୍ତେ ଭୋଜନ କଲେ ତୃପ୍ତ ହେବେ ଓ ଖୁସି ହେବେ, ତେବେ ଏଥିରୁ କେତେ ଲାଭ ମିଳିବ! ତେଣୁ ମାଆ! ତୁମେ ମୋତେ ରୋଷେଇ କରିବାକୁ ଅନୁମତି ଦିଅ। ମୁଁ ଖାଲିଟାରେ ବସି ବସି କରିବି ବା କ'ଣ? କିଛିଟା ପରିଶ୍ରମ କଲେ ସିନା ଦେହ ଭଲ ରହିବ, ସ୍ୱାସ୍ଥ୍ୟ ଭଲ ରହିବ।" ଶାଶୁ ଏହା ଶୁଣି ମନେ ମନେ ଭାବିଲା, ବୋହୂ ସତ କହୁଛି ତ! ଆମେ ଏହାକୁ ସାନ ବୋଲି ବୁଝୁଛୁ, ହେଲେ ଏହାର ବୁଦ୍ଧି ବହୁତ ଭଲ।

ତା'ପରଦିନ ସକାଳୁ ସକାଳୁ ଶାଶୁ ରୋଷେଇ ଘରେ ହାଜର। ବୋହୂମାନେ ଦେଖି କହିଲେ—"ମାଆ! ତୁମେ ଏ କ'ଣ କରୁଛ? ରୋଷେଇ କରିବାକୁ ତ ବହୁତ ଲୋକ ଅଛନ୍ତି। ତୁମେ ପରିଶ୍ରମ କରୁଛ କାହିଁକି?" ଶାଶୁ କହିଲା—"ତୁମର ବେଳ ଅଛି, ବୟସ ଅଛି, କିନ୍ତୁ ମୁଁ ତ ବୁଢ଼ୀ ହେଲିଣି, ଶୀଘ୍ର ମରିବି। ମୁଁ ଏବେ ପୁଣ୍ୟ ନ କଲେ ଆଉ କରିବି କେବେ?' ବୋହୂମାନେ କହିଲେ—"ଏଥିରେ ପୁଣ୍ୟ କ'ଣ? ଏହା ତ ଘରକାମ।" ଶାଶୁ କହିଲା—"ଘରକାମ କଲେ କ'ଣ ପାପ ଲାଗେ? ଯଦି ଭୋକିଲା ଲୋକଙ୍କୁ, ସାଧୁ ଓ ବ୍ରାହ୍ମଣମାନଙ୍କୁ ଭୋଜନ କରାଇଲେ ପୁଣ୍ୟ ହୁଏ, ତେବେ ଘରଲୋକଙ୍କୁ ଭୋଜନ କରାଇଲେ କ'ଣ ପାପ ଲାଗିବ? ଓଲଟା ଏଥିରେ ବ୍ୟକ୍ତିଗତ ପୁଣ୍ୟ ହୁଏ। ଘରଜିନିଷରେ ଘରର

ସମସ୍ତଙ୍କର ଭାଗ ଅଛି, ତେଣୁ ତାହା ଦାନପୁଣ୍ୟ କଲେ ସମସ୍ତଙ୍କୁ ପୁଣ୍ୟ ମିଳେ। କିନ୍ତୁ ନିଜେ ପରିଶ୍ରମ କରି ରୋଷେଇ କଲେ କେବଳ ରୋଷେଇ କରିବା ଲୋକକୁ ପୁଣ୍ୟ ମିଳେ। ମୋ ପରି ବୁଢ଼ାବୁଢ଼ୀ ଏବେ ପୁଣ୍ୟ ନ କଲେ, ଆଉ କରିବେ କେବେ?'' ଶାଶୁ କଥା ଶୁଣି ବୋହୂମାନଙ୍କ ମନରେ ବି ଉତ୍ସାହ ଜାତ ହେଲା। ସେମାନେ ଭାବିଲେ, ସତ କଥା ତ, ଘର କାମ କଲେ, ରନ୍ଧାବଢ଼ା କରି ସମସ୍ତଙ୍କୁ ଖୁଆଇଲେ ଯେ ପୁଣ୍ୟ ହୁଏ, ଏ କଥାକୁ ତ ଆମେ ଲକ୍ଷ୍ୟ ଦେଇ ନ ଥିଲେ। ଏହା ଖୁବ୍ ଭଲ କଥା। ଏଥର ଯେଉଁ ବୋହୂ ଆଗ ଉଠିଯାଏ, ସେ ରୋଷେଇ କରିବାକୁ ଆଗତୁରା ଚାଲିଯାଏ। ଏପରି ହେଉ ହେଉ ପରସ୍ପର ମଧ୍ୟରେ କଳି ଆରମ୍ଭ ହୋଇଗଲା। ଇଏ କହିଲା, ମୁଁ ରାନ୍ଧିବି; ସେ କହିଲା, ମୁଁ ରାନ୍ଧିବି! ଏ କଥା ଯାଇ ମହାଜନଙ୍କ କାନରେ ପଡ଼ିବାରୁ ସେ କହିଲେ—ସମସ୍ତେ ପାଳି କରି ଦିଅ, ନିଜ ନିଜ ପାଳିରେ ରୋଷେଇ କର।

ଆଗରୁ 'ରୋଷେଇ ତୁ କର, ତୁ କର' ଭାବନା ରହୁଥିଲା, ତେଣୁ ଛଅ ପାଳି ହେଉଥିଲା। ଏବେ 'ରୋଷେଇ ମୁଁ କରିବି, ମୁଁ କରିବି' ଭାବନା ହେବାରୁ ଆଠ ପାଳି ହେଲା। ଶାଶୁ ଓ ସାନ ବୋହୂକୁ ମିଶାଇ ଦୁଇଜଣ ଲୋକ ଅଧିକ ହୋଇଗଲେ। କାମ କରିବାରେ 'ତୁ କର, ତୁ କର' ହେଲେ କାମ ହୋଇଯାଏ ବେଶୀ ଓ ଲୋକ ହୁଅନ୍ତି କମ୍, କିନ୍ତୁ 'ମୁଁ କରିବି, ମୁଁ କରିବି' ହେଲେ କାମ ହୋଇଯାଏ କମ୍ ଓ ଲୋକ ହୋଇଯାଆନ୍ତି ବେଶୀ। ଧନୀଲୋକେ ଘରକାମ ପାଇଁ ଚାକର ରଖୁଛନ୍ତି। ଚାକର କଣ ସାଧୁସନ୍ନ୍ୟାସୀ କି? ତା'ର ବି ତ କୁଟୁମ୍ବ ଅଛି। ସେ ନିଜ ଘରର କାମ କରୁଛି ଓ ଆପଣଙ୍କ ଘରକାମ କରି ପଇସା ନେଉଛି। କିନ୍ତୁ ଆପଣ ନିଜ ଘରର କାମ ମଧ୍ୟ କରି ପାରୁ ନାହାନ୍ତି, ଏଣେ ବଡ଼ ବୋଲାଉଛନ୍ତି! ତା'ହେଲେ ଭାବନ୍ତୁ, ଆପଣ ବଡ଼ ହେଲେ, ନା ଚାକର ବଡ଼ ହେଲା?

ସାନ ବୋହୂ ଭାବିଲା—ଏବେ ତ ଚାରି ଦିନରେ ଥରେ ପାଳି ପଡୁଛି, କ'ଣ କରିବି? ଘରେ ଗୋଟିଏ ପୁରୁଣା ଅଟା ପେଷା ଚକି ପଡ଼ିଥିଲା। ସାନ ବୋହୂ ତାହାକୁ ନିଜ ଘରକୁ ନେଇ ଆସିଲା ଏବଂ ଅଟା ପେଷିବାକୁ ଲାଗିଲା। ଅଟାକଳରେ ପେଷା ଯାଉଥିବା ଅଟା ଗରମ ହୋଇଥାଏ ଏବଂ ବସ୍ତାରେ ସେହି ଗରମ ଗରମ ଅଟାକୁ ପୂରାଇ ଦେଲେ

ତାହା ଖରାପ ହୋଇଯାଏ, ଫଳରେ ସେଥିରେ ରୁଟି ସୁଆଦିଆ ହୁଏ ନାହିଁ। କିନ୍ତୁ ଚକିରେ ପେଷା ଯାଇଥିବା ଅଟା ଥଣ୍ଡା ଥାଏ ଏବଂ ସେଥିରେ ରୁଟି ତିଆରି କଲେ ତାହା ସୁଆଦିଆ ହୁଏ। ସାନ ବୋହୂ ହାତରେ ଅଟା ପେଷି ସେଥିରେ ରୁଟି କରିବାରୁ ଘର ଲୋକେ କହିଲେ, ଆଜି ରୁଟି ତ ବହୁତ ଭଲ ଲାଗୁଛି!

ଶାଶୁ ସାନ ବୋହୂ ପାଖକୁ ଯାଇ କହିଲା—"ବୋହୂ! ତୁ ଅଟା ପେଷୁଛୁ କାହିଁକି? ଆମର କ'ଣ ପଇସା ନାହିଁ? ଭଗବାନ ବହୁତ ଦେଇଛନ୍ତି!" ବୋହୂ କହିଲା—"ମାଆ! ବହୁତ ପଇସା ଥିଲେ କ'ଣ ହେଲା, ମୁଁ ହିଁ ସବୁଦିନ ଅଟା ପେଷିବି। ହାତରେ ଅଟା ପେଷିଲେ ଦେହ ଭଲ ରହେ। ଛାଏଁ ଛାଏଁ ବ୍ୟାୟାମ ହୋଇଯାଏ। ରୋଗ ପାଖ ମାଡ଼େନି। ବାରମ୍ବାର ବୈଦ୍ୟ ଓ ଡାକ୍ତରଙ୍କ ପାଖକୁ ଯିବାକୁ ପଡ଼େନି। ଦ୍ୱିତୀୟ କଥା ହେଲା, ରୋଷେଇ କରିବା ଅପେକ୍ଷା ଅଟା ପେଷିବାରେ ଅଧିକ ପୁଣ୍ୟ ହୁଏ। ରୋଷେଇ ଯିଏ କରୁ ପଛେ, ମୁଁ ପେଷିଥିବା ଅଟା ହିଁ ତ ସମସ୍ତେ ଖାଇବେ!" ଶାଶୁ ଓ ବଡ଼ ଯାଆମାନେ ଏହା ଶୁଣି ଭାବିଲେ, ସାନ ବୋହୂ ସତ କଥା କହୁଛି। ସେମାନେ ନିଜ ନିଜ ସ୍ୱାମୀଙ୍କୁ କହି ନିଜେ ଅଟା ପେଷିବେ ବୋଲି ଗୋଟିଏ ଲେଖାଏଁ ଚକି ମଗାଇଲେ। ସବୁ ଚକିରେ ପ୍ରତିଦିନ ଆଠ ଦଶ କିଲୋ ଅଟା ପେଷା ହେଲା। ଅଟା ଅଧିକ ହେଲା। ଅଧିକ ଅଟା କ'ଣ କରାଯିବ? ସାନ ବୋହୂ କହିଲା—ଆମ ଦୋକାନରେ ଅଟା ବିକ୍ରି କର। ସାନ ବୋହୂ କଥା ସମସ୍ତେ ମାନିଲେ ଏବଂ କହିଲେ, ଏ ଯାହା କହୁଛି, ଠିକ୍ କହୁଛି।

ତା'ପରେ ସାନ ବୋହୂ ଭାବିଲା—ଅଟା ପେଷିବା କାମ ତ ମୋ ହାତଛଡ଼ା ହୋଇଗଲା, ଏବେ ଆଉ କ'ଣ କରିବି? ଅଗଣାରେ ଗୋଟିଏ କୂଅ ଥିଲା। ପ୍ରତିଦିନ ଜଣେ ଚାକର ପାଣି ଭର୍ତ୍ତି କରିବାକୁ ଆସୁଥାଏ। ସାନ ବୋହୂ ସକାଳୁ ସକାଳୁ ଉଠି ଗାଧୋଇପାଧୋଇ ଗରା, ମାଠିଆ ଆଦି ସବୁ ଜାଗାରେ ପାଣି ଭର୍ତ୍ତି କରି ଦେଲା। ଚାକର ଆସି ଦେଖିଲା ବେଳକୁ ପାଣି ଭର୍ତ୍ତି ହୋଇଛି। ସେ ସେମିତି ବସି ରହିଲା। ମହାଜନ ଆସି କହିଲେ—"ଆରେ! ବସିଛୁ କ'ଣ, ପାଣି ଭର୍ତ୍ତି କରୁନୁ?" ଚାକର କହିଲା—"ଆଜ୍ଞା! ଆଗରୁ ସବୁ ପାଣି ଭର୍ତ୍ତି ସରିଛି, ମୁଁ କ'ଣ କରିବି?" ମହାଜନ

କହିଲେ—ପାଣି କିଏ ଭର୍ତ୍ତି କରିଛି ବୁଝିଲ । ଶାଶୁ ସାନ ବୋହୂ ପାଖକୁ ଯାଇ କହିଲା—"ବୋହୂ! ପାଣି ତୁ ଭର୍ତ୍ତି କରିଛୁ?" ବୋହୂ କହିଲା—"ମାଆ! ତୁମେ ପାଟି କରନି, ତୁନି ରୁହ! ତୁମେ କହି ଦେବାରୁ ମୋର ସବୁ ରୋଜଗାର ହାତ ଛଡ଼ା ହୋଇଯାଉଛି । ତୁମେ ବୈଶାଖମାହାତ୍ମ୍ୟ ଶୁଣିଛ କି ନାହିଁ? ବୈଶାଖ ମାସରେ ପାଣି ପିଆଇବାର ମାହାତ୍ମ୍ୟ ବେଶୀ । ପାଣି ପିଆଇବାରେ ଯେତେ ପୁଣ୍ୟ, ଅନ୍ନ ଦେବାରେ ସେତେ ପୁଣ୍ୟ ନୁହେଁ, କାରଣ ଅନ୍ନ ତ ଦିନରେ ଦୁଇଥର ଖିଆଯାଏ, କିନ୍ତୁ ପାଣି ତ ଦିନରେ କେତେ ଥର ପିଇବାକୁ ପଡ଼େ । ପାଣିରେ ଗାଧୁଆଯାଏ, କୁଳୁକୁଞ୍ଚା କରାଯାଏ, ହାତଗୋଡ଼ ଧୁଆଯାଏ । ପାଣି ବେଶୀ କାମରେ ଲାଗେ ।"

ପର ଦିନ ଶାଶୁ ଶୀଘ୍ର ଉଠି କୂଅରୁ ପାଣି କାଢ଼ିବାକୁ ଲାଗିଲା । ଅନ୍ୟ ବୋହୂମାନେ କହିଲେ—"ମାଆ! ତୁମେ ଏଠି କ'ଣ କରୁଛ? ତୁମେ ପାଣି କାଢ଼ିବାଟା କଣ ଠିକ୍ ହେଉଛି? ଲୋକେ ଦେଖିଲେ କହିବେ, ଘରେ ଏତେ ବୋହୂ ଥାଉ ଥାଉ ଶାଶୁ ବୁଢ଼ୀ ପାଣି କାଢୁଛି ।" ଶାଶୁ କହିଲା—"ବୁଢ଼ା-ବୁଢ଼ୀମାନେ ଶୀଘ୍ର ମରିଯିବେ, ତେଣୁ ସେମାନେ ଆଗ କାମ କରି ପୁଣ୍ୟ ଅର୍ଜନ କରିନେବା ଉଚିତ । ତୁମେମାନେ ତ ପରେ କରି ପାରିବ ।" ସେହି ଦିନଠାରୁ ସବୁ ବୋହୂ ପାଣି କାଢ଼ିବା ଆରମ୍ଭ କରିଦେଲେ । ମହାଜନ କହିଲେ, ଚାକରଟା ଖାଲିଟାରେ ବସି ରହୁଛି, ତାକୁ ବିଦା କରିଦେବା ।" ସାନ ବୋହୂ ଏହା ଶୁଣି ଶାଶୁ ନିକଟକୁ ଗଲା ଓ କହିଲା—"ମାଆ! ମୋର ଗୋଟିଏ ପ୍ରାର୍ଥନା ଶୁଣ, ବାପାଙ୍କୁ କହିବ, ସେ ଚାକରକୁ ବାହାର କରିବେ ନାହିଁ । ସେ ବିଚରା ଗୃହସ୍ଥ ଲୋକ । ଏଇଥିରେ ପେଟ ପୋଷୁଛି । ତାକୁ ବାହାର ନ କରି ଅନ୍ୟ କୌଣସି କାମରେ ଲଗାଇଦେବେ ।" ଶାଶୁ ଉପରେ ଏ କଥାର ଯଥେଷ୍ଟ ପ୍ରଭାବ ପଡ଼ିଲା । ସେ ଭାବିଲା, ବୋହୂର ଭାବନା କେତେ ଭଲ! ଏ କେତେ ବୁଦ୍ଧିମତୀ!

ତା'ପରେ ସାନ ବୋହୂ ବିଚାର କଲା—ରୋଷେଇ ମଧ୍ୟ ସମସ୍ତେ କଲେ, ଅଟା ପେଷିବା କାମ ମଧ୍ୟ ସମସ୍ତେ କଲେ, ପାଣି ଭର୍ତ୍ତି କରିବା କାମ ମଧ୍ୟ ସମସ୍ତେ କଲେ, ଏବେ ମୁଁ କ'ଣ କରିବି? ଘରର ଅଇଁଠା ବାସନ ମାଜିବା ପାଇଁ ଜଣେ ଚାକରାଣୀ ଆସୁଥାଏ । ସାନ ବୋହୂ ଗୋଟେ ଜାଗାରେ ପାଉଁଶ ଧରି ଏକପାଖିଆ ହୋଇ ବସିଗଲା ଓ ସବୁ ବାସନକୁସନ

ମାଜିଦେଲା । ଗୃହକରାଣୀ ଟିକେ ଦୂରରେ ବସିଥାଏ । ଏହା ଦେଖି ଶାଶୁ ବୋହୂକୁ କହିଲା—"ବୋହୂ! ତୁ ଟିକେ ଭାବିଲୁ, ବାସନ ମାଜିଲେ ତୋ ଗହଣା, କାଚ ଓ ଲୁଗାପଟା ଖରାପ ହୋଇଯିବନି, ଏଥିରେ କି ଲାଭ?" ସାନ ବୋହୂ କହିଲା—"ମାଆ! ନା, ନା, ସେ କଥା ନୁହଁ । ତୁମେ ପାଟି କରନି, ଚୁପ୍ ରୁହ!" ଶାଶୁ କହିଲା—"ତେବେ ତୁ ଏମିତି କାହିଁକି କରୁଛୁ କହିଲୁ ।" ସାନ ବୋହୂ କହିଲା—"ମାଆ! ଅଇଁଠା ପତ୍ର ଉଠାଇବାର ବଡ଼ ମାହାତ୍ମ୍ୟ ରହିଛି । ତୁମେ ମହାଭାରତରେ ଏ କଥା ଶୁଣିଛ କି ନାହିଁ? ପାଣ୍ଡବମାନେ ଯଜ୍ଞରେ ସର୍ବପ୍ରଥମେ କୃଷ୍ଣଙ୍କୁ ପୂଜା କଲେ । ସେହି ଭଗବାନ ଶ୍ରୀକୃଷ୍ଣ ସମସ୍ତଙ୍କର ଅଇଁଠା ପତ୍ର ଉଠାଇଲେ । କାମ ଯେତେ ଛୋଟ ହୋଇଥାଏ, ତାକୁ କରିବାର ମାହାତ୍ମ୍ୟ ସେତେ ଅଧିକ ହୁଏ । ଯଦି ଅଇଁଠା ପତ୍ର ଉଠାଇବାର ମାହାତ୍ମ୍ୟ ଅଧିକ ହୋଇ ନ ଥାଆନ୍ତା, ତେବେ ଭଗବାନ ଏପରି କାର୍ଯ୍ୟ କାହିଁକି କରିଥାଆନ୍ତେ?"

ତା'ପର ଦିନ ଶାଶୁ ବାସନ ମାଜିବାକୁ ବସିଯିବାର ଦେଖି ସାନ ବୋହୂ କହିଲା—"ଦେଖ ମାଆ! ମୋ କଥା ଶୁଣ । ଏ ଥାଳି, ଗିନା, ଗିଲାସ ଆଦିକୁ ମାଜିବାର ଅଧିକାର ମୋର; କାରଣ ଏସବୁ ମୋ ସ୍ୱାମୀଙ୍କର ଅଇଁଠା ବାସନ । ତେଣୁ ଏ ସବୁକୁ ମୁଁ ମାଜିବି । ଶାଶୁ କହିଲା—"ଯା, ଯା । ତୋ ସ୍ୱାମୀ ପଛରେ, ମୋର ପୁଅ ଆଗ; ତେଣୁ ମୁଁ ମାଜିବି ।" ଏହିଭଳି ବାସନ ମାଜିବା ପାଇଁ କଳି ଆରମ୍ଭ ହେଲା । ଶେଷକୁ ସବୁ ବୋହୂ ବାସନ ମାଜିବା ଆରମ୍ଭ କରିଦେଲେ ।

ସାନ ବୋହୂ ଭାବିଲା—ଏବେ ମୁଁ କ'ଣ କରିବି? ସକାଳେ ଘର ଓଳେଇବା ପାଇଁ ଜଣେ ଗୃହକର ଆସୁଥାଏ । ସାନ ବୋହୂ ସକାଳୁ ଶୀଘ୍ର ଶୀଘ୍ର ଉଠି ସବୁ ଘର ଓଳାଇ ଦେଲା । ଗୃହକର ଆସି ଦେଖିଲା ବେଳକୁ ଘର ଓଳା ସରିଛି । ସେ ସେମିତି ବସି ରହିଲା । ଶାଶୁ ସାନ ବୋହୂକୁ ପଚାରିଲା—"ଘର ତୁ ଓଳେଇଛୁ?" ସାନ ବୋହୂ କହିଲା—"ମାଆ! ତୁମେ ପାଟି କରନି, ଚୁପ୍ ରୁହ । ତୁମେ ପାଟି କଲେ ସମସ୍ତେ ଜାଣି ଯାଉଛନ୍ତି ଏବଂ କାମଟି ମୋ ହାତଛଡ଼ା ହୋଇଯାଉଛି!" ଶାଶୁ କହିଲା—"ଘର ଓଳେଇବାକୁ ତ ଗୃହକର ଅଛି, ପୁଣି ତୁ ଘର ଓଳାଉଛୁ କାହିଁକି?" ସାନ ବୋହୂ କହିଲା—"ମାଆ! ତୁମେ କ'ଣ ରାମାୟଣ ଶୁଣିନ! ବଣରେ

ବଡ଼ ବଡ଼ ଋଷିମୁନି ରହୁଥିଲେ, କିନ୍ତୁ ଭଗବାନ ସେମାନଙ୍କ ଆଶ୍ରମକୁ ନ ଯାଇ ଶବରୀର କୁଡ଼ିଆକୁ ଗଲେ । ଏହାର କାରଣ କ'ଣ ଜାଣିଛ? ଶବରୀ ସବୁଦିନ ରାତିରୁ ଉଠି ରାସ୍ତା ଓଳାଉଥିଲା, ଋଷିମୁନିମାନଙ୍କ ଗୋଡ଼ରେ କଣ୍ଟାଝଟା ନ ଲାଗିବା ପାଇଁ ପମ୍ପାସରୋବରର ରାସ୍ତା ପରିଷ୍କାର କରୁଥିଲା । ତେଣୁ ଏହି ସେବାର ମାହାତ୍ମ୍ୟ ବହୁତ ଅଧିକ ।'' ଶାଶୁ ଦେଖିଲା, ଏ ସାନ ବୋହୂ ସମସ୍ତଙ୍କର ପୁଣ୍ୟ ଏକୁଟିଆ ଛଡ଼ାଇ ନେବ । ଏଣିକି ଶାଶୁ ଓ ଅନ୍ୟ ବୋହୂମାନେ ଘର ଓଳାଇବା ଆରମ୍ଭ କରିଦେଲେ ।

ଯେଉଁ ଘରେ ପରସ୍ପର ମଧ୍ୟରେ ପ୍ରେମ ଭାବ ଥାଏ, ସେଠାରେ ଶ୍ରୀବୃଦ୍ଧି ହୁଏ ଏବଂ ଯେଉଁ ଘରେ କଳହ ହୁଏ, ସେଠାରେ ଦରିଦ୍ରତା ନିବାସ କରେ—

**ଜହାଁ ସୁମତି ତହଁ ସଂପତି ନାନା । ଜହାଁ କୁମତି ତହଁ ବିପତି ନିଦାନା ॥**

(ମାନସ, ସୁନ୍ଦର ୪୦ । ୩)

ମହାଜନଙ୍କ ଦୋକାନରେ ଅଧିକ ଲାଭ ହେଲା । ମହାଜନ ଭାବିଲେ— ଘରର ସ୍ତ୍ରୀଲୋକମାନଙ୍କ ପାଖରେ ବି ଧନ ରହିବା ଦରକାର । ସେ ସବୁ ବୋହୂଙ୍କ ପାଇଁ ଗହଣା ତିଆରି କଲେ । ଗହଣା ହେଉଛି ସ୍ତ୍ରୀର ଧନ । ସେଥିରେ ସ୍ୱାମୀର ମଧ୍ୟ ଅଧିକାର ନ ଥାଏ । ସାନ ବୋହୂ ଶଶୁର ଦେଇଥିବା ଗହଣାକୁ ନେଇ ବଡ଼ ଯାଆ ପାଖକୁ ଗଲା ଏବଂ କହିଲା, ''ତୁମର ପୁଅଝିଅ ଅଛନ୍ତି । ସେମାନଙ୍କ ବିବାହରେ ତୁମକୁ ଗହଣା ତିଆରି କରିବାକୁ ପଡ଼ିବ । ମୋର ତ ପୁଅଝିଅ କେହି ନାହାନ୍ତି । ତେଣୁ ଏସବୁ ଗହଣା ମୁଁ କ'ଣ କରିବି? ଏ ଗହଣା ତୁମେ ରଖ । ମୋର ତ ବାପାମାଆ ଦେଇଥିବା ଗହଣା ସବୁ ସେମିତି ସିନ୍ଦୁକରେ ପଡ଼ିଛି । ଶାଶୁ ଏହା ଦେଖି ସାନ ବୋହୂ ପାଖକୁ ଯାଇ କହିଲା—''ବୋହୂ! ତୁ ଏ କ'ଣ କରୁଛୁ? ତୋ ଶଶୁର ସମସ୍ତଙ୍କୁ ଗହଣା ଦେଇଛନ୍ତି ।'' ସାନ ବୋହୂ କହିଲା—''ମାଆ! ତୁମେ ଚୁପ୍ ରୁହ, ପାଟି କରନି । ତୁମକୁ କିଛି କହିବା ଅର୍ଥ ଗାଁଆ ସାରା ଢେଙ୍ଗୁରା ପିଟିବା । କାମଧନ୍ଦା କଲେ ପୁଣ୍ୟ ହୁଏ, ତେବେ ଦାନ ଦେଲେ କ'ଣ ପାପ ହେବ? ଜିନିଷ ଦେଲେ ତ ବଡ଼ ପୁଣ୍ୟ ହୁଏ!'' ବୋହୂ କଥା ଶାଶୁ ମନକୁ ପାଇଲା । ସେ ଯାଇ ମହାଜନଙ୍କୁ କହିଲା—''ମୁଁ ଗ୍ରାହକର ଓ ଗ୍ରାହକରାଣୀମାନଙ୍କୁ ଲୁଗାପଟା ଦେବି ।'' ମହାଜନ ଅତି ଖୁସି ହେଲେ ଯେ, ଯାହାହେଉ ଆଗରୁ

ଘରକର ଘରକରାଣୀଙ୍କୁ କିଛି ଦେଲେ ଇଏ କଳି କରୁଥିଲା, ଏବେ ଇଏ ନିଜେ ଦେବା ପାଇଁ ମନ ବଳାଉଛି! ଶାଶୁ ମଧ୍ୟ ଅନ୍ୟମାନଙ୍କୁ ଜିନିଷ ପତ୍ର ଦେଲା ଏବଂ ବୋହୂମାନେ ମଧ୍ୟ ଦେବାକୁ ଲାଗିଲେ। ଘରେ ଜିନିଷ ହୋଇଗଲା ଅଧିକ ଏବଂ ନେବା ଲୋକ ହୋଇଗଲେ କମ୍! ପୁଣ୍ୟ ଦୁଇଟି ଉପାୟରେ କରାଯାଏ—କାମଧନ୍ଦା ନିଜେ କରି ଏବଂ ଅନ୍ୟମାନଙ୍କୁ ଜିନିଷପତ୍ର ଦେଇ। ଏ ଦୁଇଟି କାମ କଲେ ଘରେ କଳି ହେବ ନାହିଁ, ଶାନ୍ତି ରହିବ। ଅନ୍ୟଲୋକେ ମଧ୍ୟ ଭାବିବେ ଯେ, ଝିଅ ଦେବାକୁ ହେଲେ ଏପରି ଭଲ ଘରେ ଦିଅ, ଯାହାଫଳରେ ସେ ସୁଖ ପାଇବ। ଝିଅ ନେବାକୁ ହେଲେ ଏପରି ଘରୁ ନିଅ, ଯାହାଫଳରେ ଆମ ଘରେ ମଧ୍ୟ ସୁଖଶାନ୍ତି ରହିବ। ସାଧୁମାନେ ଏପରି ଘରୁ ଭିକ୍ଷା ନେବାକୁ ଇଚ୍ଛା କରନ୍ତି।

ଗୀତାରେ ଅଛି—

**ଯଦ୍ ଯଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନଃ।**
**ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ॥**

(୩।୨୧)

"ଶ୍ରେଷ୍ଠ ପୁରୁଷ ଯେପରି ଆଚରଣ କରନ୍ତି, ଅନ୍ୟମାନେ ମଧ୍ୟ ସେହିପରି ଆଚରଣ କରନ୍ତି। ସେ ଯାହା କିଛି ପ୍ରମାଣିତ କରି ଦିଅନ୍ତି, ଅନ୍ୟ ଲୋକେ ତଦନୁସାରେ ଆଚରଣ କରନ୍ତି।"

ଏହି ଶ୍ଳୋକରେ ଶ୍ରେଷ୍ଠ ପୁରୁଷଙ୍କ ଆଚରଣ ପାଇଁ **'ଯତ୍'-'ଯତ୍'**, **'ତତ୍'-'ତତ୍'** ଓ **'ଏବ'** ପାଞ୍ଚଟି ପଦ ବ୍ୟବହୃତ ହୋଇଥିବା ସ୍ଥଳେ ପ୍ରମାଣ (ବଚନ) ପାଇଁ କେବଳ **'ଯତ୍'** ଓ **'ତତ୍'** ଦୁଇଟି ପଦ ବ୍ୟବହୃତ ହୋଇଛି। ଏହାର ତାତ୍ପର୍ଯ୍ୟ ହେଲା—ମନୁଷ୍ୟର ଆଚରଣର ପ୍ରଭାବ ସମାଜ ଉପରେ ପାଞ୍ଚଗୁଣ ପଡ଼େ ଏବଂ ବଚନର ପ୍ରଭାବ ଦୁଇଗୁଣ ପଡ଼େ। ସାନ ବୋହୂ ଆଚରଣ କରିଥିଲା, କେବଳ ବ୍ୟାଖ୍ୟାନ ଦେଇ ନ ଥିଲା। ତେଣୁ ତା'ର ପ୍ରଭାବ ଘରର ସମସ୍ତଙ୍କ ଉପରେ ପଡ଼ିଲା, ଯାହା ଫଳରେ ଘର ସୁଧୁରି ଗଲା। କେବଳ ସେତିକି ନୁହେଁ, ପଡ଼ିଶା ଘରର ଲୋକଙ୍କ ଉପରେ ମଧ୍ୟ ଏହାର ବହୁତ ଭଲ ପ୍ରଭାବ ପଡ଼ିଲା, ଫଳରେ ସେମାନଙ୍କର ଘର ମଧ୍ୟ ସୁଧୁରି ଗଲା। ଗୋଟିଏ ଘର ସୁଧୁରି ଯିବାରୁ ଅନେକ ଘର ସୁଧୁରି ଗଲା।



# ୬. ଅଦ୍ଭୁତ ଡେଉଁରିଆ

ଜଣେ ମହାତ୍ମା ଥିଲେ । ସେ ଗାଁ ଗାଁ ବୁଲି ସତ୍ସଙ୍ଗ କରୁଥିଲେ । ସେ ଗୋଟିଏ ଗାଁକୁ ଯାଇ, ସେଠାରେ କିଛି ଦିନ ରହି ସତ୍ସଙ୍ଗ କରନ୍ତି ଏବଂ ତା'ପରେ ସେଠାରୁ ଅନ୍ୟ ଗୋଟିଏ ଗାଁକୁ ଚାଲିଯାଆନ୍ତି । ଲୋକେ ମଧ୍ୟ ତାଙ୍କ ପ୍ରତି ଖୁବ୍ ଶ୍ରଦ୍ଧା ରଖୁଥିଲେ; ତାଙ୍କ କଥା ମାନୁଥିଲେ । ଏପରି ବୁଲୁ ବୁଲୁ ସେ ଯାଇ ଗୋଟିଏ ଗାଁରେ ପହଞ୍ଚିଲେ । ଗାଁରେ ପ୍ରଚାର ହୋଇଗଲା ଯେ, ମହାତ୍ମା ଆସିଛନ୍ତି; ଆଜି ଅମୁକ ଜାଗାରେ ସତ୍ସଙ୍ଗ ହେବ । ସତ୍ସଙ୍ଗରେ ବହୁତ ଲୋକ ରୁଣ୍ଡ ହେଲେ । ସତ୍ସଙ୍ଗ ଶେଷ ହେବା ପରେ ଜଣେ ସ୍ତ୍ରୀଲୋକ ମହାତ୍ମାଙ୍କ ପାଖକୁ ଯାଇ କହିଲା—"ମହାରାଜ! ଆପଣ ଅମୁକ ଗାଁକୁ ଯାଉଛନ୍ତି ନା?"

ମହାତ୍ମା—"ହଁ ମାଆ, ଯାଉଛି ।"

ସ୍ତ୍ରୀଲୋକ—"ସେହି ଗାଁରେ ଆପଣଙ୍କର ଅମୁକ ଭକ୍ତଙ୍କ ଘର; ଆପଣ ତାଙ୍କ ଘରକୁ ମଧ୍ୟ ଯାଉଛନ୍ତି ନା?"

ମହାତ୍ମା—"ହଁ, ଯାଉଛି ।"

ସ୍ତ୍ରୀଲୋକ—"ମୋର ଏ ବୋହୂ ତାହାରି ଝିଅ । ଇଏ ମୋ ସଙ୍ଗରେ କଳି କରୁଛି । ମୋ କଥା ଶୁଣୁନି!"

ଲୋକମାନଙ୍କ ମନରେ ମହାତ୍ମାଙ୍କ ପ୍ରତି ଭୟ ଥିଲା । କେହି କିଛି ଗଣ୍ଡଗୋଳ କଲେ ଲୋକେ କହନ୍ତି, ଆମେ ମହାତ୍ମାଙ୍କୁ କହିଦେବୁ । ସେ କହେ—"ଭାଇ ମହାତ୍ମାଙ୍କୁ କୁହ ନାହିଁ, ତୁମେ ଯାହା କହିବ, ମୁଁ ଏଥର ସେଇଆ କରିବି ।" ମହାତ୍ମା ଜଣକ ରାଜାଙ୍କ ଭଳି କୌଣସି ଦଣ୍ଡ ଦେଉ ନ ଥିଲେ । ସେ ଅତି ସ୍ନେହରେ ବୁଝାଇ କହୁଥିଲେ—'ଭାଇ! ତୁମେ ଏସବୁ କାହିଁକି କରୁଛ?" ଲୋକେ ତାଙ୍କ କଥାକୁ ଆଦର କରୁଥିଲେ । ପ୍ରେମର ସହିତ କରାଯାଉଥିବା ଶାସନ ବଡ଼ ବିଚିତ୍ର ହୋଇଥାଏ । ରାଜାଙ୍କର ଶାସନ ତ ରାଜସିକ ଓ ତାମସିକ; କିନ୍ତୁ ସନ୍ଥମାନଙ୍କର ଶାସନ ସାତ୍ତ୍ୱିକ ।

ମହାତ୍ମା ସେହି ସ୍ତ୍ରୀଲୋକଟିର ବୋହୂକୁ ଡାକିଲେ; ତାକୁ କହିଲେ—

"ମାଆ! ତୁ ଶାଶୁ ସାଙ୍ଗରେ କଳି କରୁଛୁ କାହିଁକି?" ମହାତ୍ମାଙ୍କର ଏ କଥା ଶୁଣି ତା'ଆଖିରୁ ଧାର ଧାର ଲୁହ ବୋହି ପଡ଼ିଲା। ପିଲାବେଳେ ସେ ମହାତ୍ମାଙ୍କ ଆଗରେ ଖେଳୁଥିଲା। ବଡ଼ ହୋଇଯିବାରୁ ବାହା ହୋଇ ଶାଶୁ ଘରକୁ ଆସିଛି। ବାପା, ବୁଢ଼ାବାପାଙ୍କ ଭଳି ମହାତ୍ମାଙ୍କ ପ୍ରତି ତା'ର ସମ୍ମାନ ଥିଲା। ମହାତ୍ମାଙ୍କ ନିକଟରେ ତା' ବିରୋଧରେ ଅଭିଯୋଗ ହୋଇଥିବାର ଜାଣି ସେ ଡରିଗଲା ଓ କାନ୍ଦି ପକାଇଲା। ମହାତ୍ମା ଜଣକ ଆଶ୍ୱାସନା ଦେବାରୁ ସେ କହିଲା—"ମହାରାଜ! ମୁଁ କିଛି ଦୋଷ କରିନି। ମୁଁ ଶାଶୁଙ୍କୁ ଦୁଃଖ ଦେଉନି, ତଥାପି ମୋ କାମ ଏହାଙ୍କ ମନକୁ ପାଉନି। ମୁଁ କ'ଣ କରିବି? ଶାଶୁ ଖାଲିଟାରେ ମୋ ସାଙ୍ଗରେ କଳି କରୁଛନ୍ତି!"

ବୋହୂ କହୁଛି, ଶାଶୁ କଳି କରୁଛି; ଶାଶୁ କହୁଛି, ବୋହୂ କଳି କରୁଛି! ନିହାତିପକ୍ଷେ ଦୁଇଜଣ ହେଲେ ଯାଇ କଳି ସମ୍ଭବ। ଏକୁଟିଆ କଳି ହୋଇ ପାରେ ନାହିଁ। ଶହ ଶହ, ହଜାର ହଜାର ଲୋକେ ମିଶି କଳି କରି ପାରନ୍ତି, କିନ୍ତୁ ଏକୁଟିଆ କେହିହେଲେ କଳି କରି ପାରେ ନାହିଁ। ଦୁଇଜଣ କଳି କରୁଥିଲେ ଜଣେ କହେ, 'ସେ କଳି କରୁଛି' ଏବଂ ଅନ୍ୟ ଜଣେ କହେ, 'ସେ କଳି କରୁଛି।' ନିଜର ଅବଗୁଣ ନିଜକୁ ଦେଖାଯାଏ ନାହିଁ।

ମହାତ୍ମା କହିଲେ—"ମାଆ ରେ! ତୁ ବ୍ୟସ୍ତ ହୁଅନି। ମୁଁ ଏପରି ଗୋଟିଏ ଡେଉଁରିଆ ତିଆରି କରିଦେବି ଯେ, କଳି ତୁଟିଯିବ।" ସେଠାରେ ତା' ଦିଅର ଠିଆ ହୋଇଥିଲା। ମହାତ୍ମା ଜଣକ ତାକୁ କାଗଜ, କଲମ, କାଳି ଓ ଗୋଟିଏ ଡେଉଁରିଆ ଆଣିବାକୁ କହିଲେ। ସେ ଯାଇ ସବୁ ଜିନିଷ ନେଇ ଆସିଲା। ମହାତ୍ମା ଜଣକ ଖଣ୍ଡେ କାଗଜରେ କିଛି ଲେଖିଦେଲେ ଏବଂ ତାହାକୁ ଭାଙ୍ଗିଦେଇ ଡେଉଁରିଆରେ ପୂରାଇ ବନ୍ଦ କରିଦେଲେ।

ମହାତ୍ମା କହିଲେ—"ମାଆ! ତୁ ଏ ଡେଉଁରିଆକୁ ତୋ' ହାତରେ ବାନ୍ଧି ଦେ, କଳି ତୁଟିଯିବ। କିନ୍ତୁ ଏହା ସହିତ ତତେ ଗୋଟିଏ କଥା ମାନିବାକୁ ପଡ଼ିବ।"

ବୋହୂ—"ହଁ ମହାରାଜ! ଆପଣ ଯେମିତି କହିବେ, ସେମିତି କରିବି।"

ମହାତ୍ମା—"ଦୁଇଟି କଥା ପାଳନ କରିବାକୁ ହେବ। ପ୍ରଥମ କଥାଟି ହେଲା, ଶାଶୁ କିଛି କହିଲେ ତାଙ୍କୁ ଉତ୍ତର ଦେବୁନି ଏବଂ ଦ୍ୱିତୀୟ କଥାଟି ହେଲା, ଶାଶୁ ଯାହା କାମ ବତେଇବେ, ସାଙ୍ଗେ ସାଙ୍ଗେ କରିଦେବୁ। ଏ ଦୁଇଟି କଥା ମାନିଲେ ଏହି ମନ୍ତ୍ର ସିଦ୍ଧ ହୋଇଯିବ।"

ବୋହୂ—"ମହାରାଜ! ଏମିତି କେତେ ଦିନ ପର୍ଯ୍ୟନ୍ତ କରିବାକୁ ପଡ଼ିବ?"

ମହାତ୍ମା—"ଅନ୍ତତଃ ବାର ମାସ ପର୍ଯ୍ୟନ୍ତ କଲେ ସବୁ ଠିକ୍ ହୋଇଯିବ। କିନ୍ତୁ ମଝିରେ ଯଦି କେବେ ଭୁଲ୍ ହୋଇଯାଏ, ତେବେ ସେହି ଦିନଠାରୁ ଆଉ ବାର ମାସ ପର୍ଯ୍ୟନ୍ତ କରିବାକୁ ହେବ। ତା'ପୂର୍ବରୁ ଯେତେ ଦିନ ବିତିଥିବ, ତାହା ଗଣାଯିବ ନାହିଁ।"

ବୋହୂ—"ଠିକ୍ ଅଛି, ଆପଣ ଯେମିତି କହିବେ, ମୁଁ ସେମିତି କରିବି।"

ବୋହୂ ତେଉଁରିଆଟିକୁ ନିଜ ହାତରେ ବାନ୍ଧିଦେଲା। ମହାତ୍ମାଜଣକ ସେହି ଗାଁରେ ଆଉ ଚାରିପାଞ୍ଚ ଦିନ ସତ୍‌ସଙ୍ଗ କରି ଅନ୍ୟ ଗାଁକୁ ଚାଲିଗଲେ। ତାଙ୍କର ଏପରି କୌଣସି ନିୟମ ନ ଥିଲା ଯେ, ଅମୁକ ଗାଁରେ ଏତିକି ଦିନ ରହିବାକୁ ହେବ। ଆମ ଦେଶରେ ସନ୍ଥମାନଙ୍କର ଏପରି ପରମ୍ପରା ଥିଲା ଏବଂ ଲୋକମାନଙ୍କ ଉପରେ ସେମାନଙ୍କର ଧାର୍ମିକ ଶାସନ କାର୍ଯ୍ୟ କରୁଥିଲା। ତାଙ୍କ ଶାସନରେ ଲୋକେ ପ୍ରଭାବିତ ହେଉଥିଲେ। ଲୋକେ ସେହି ସନ୍ଥଙ୍କ ପ୍ରତି ଅତ୍ୟନ୍ତ ପୂଜ୍ୟଭାବ ରଖୁଥିଲେ ଏବଂ ତାଙ୍କ ଆଜ୍ଞା ପାଳନ କରୁଥିଲେ। ଏହାଦ୍ୱାରା ଗାଁ ଗାଁରେ ଶାନ୍ତି ରହୁଥିଲା।

ମହାତ୍ମା ବତାଇଥିବା ନିୟମକୁ ବୋହୂ ପାଳନ କଲା। ଶାଶୁ କୌଣସି କାମ କରିବାକୁ କହିଲେ, ସେ ତାହା କରିବା ପାଇଁ ହାତଯୋଡ଼ି ଠିଆ ହୋଇଯାଉଥାଏ ଏବଂ ଶାଶୁଙ୍କ ମୁହଁରେ ଉତ୍ତର ଦେଉ ନ ଥାଏ।

ଶାଶୁ ମନେ ମନେ ଭାବିଲା, ସତରେ ମହାତ୍ମାଙ୍କର ମନ୍ତ୍ର ବଡ଼ ବିଚିତ୍ର! ଦେଖୁନ, ଦିନକରେ ବୋହୂ କିମିତି ସୁଧୁରି ଗଲା! ଘରେ ଶାନ୍ତି ରହିଲା। ଘର ଲୋକେ ମଧ୍ୟ ଖୁସି ହୋଇଗଲେ। ଶାଶୁବୋହୂ ଆନନ୍ଦରେ ରହିଲେ। ଶାଶୁ କଥା ମାନିଲେ ଶାଶୁଙ୍କୁ ବୋହୂ ନିଜ ଝିଅଠାରୁ ମଧ୍ୟ ଅଧିକ ପ୍ରିୟ ଲାଗେ; କାରଣ ଝିଅ ତ କିଛି ଦିନ ପାଇଁ ଘରେ ରହେ, ପରେ ତା' ନିଜ ଘରକୁ ଚାଲିଯାଏ, କିନ୍ତୁ ବୋହୂ ତ ସବୁଦିନ ପାଇଁ ପାଖରେ ରହେ। ସେ ଶାଶୁ ମୁହଁରେ ଉତ୍ତର ଦେଲେ ଓ କଥା ନ ମାନିଲେ ସିନା କଳି ହୁଅନ୍ତା, ନ ହେଲେ କଳି କାହିଁକି ହେବ?

କିଛି ଦିନ ପରେ ମହାତ୍ମା ଜଣକ ପୁଣି ସେହି ଗାଁକୁ ଆସିଲେ ଓ ସେହି ସ୍ତ୍ରୀଲୋକକୁ ପଚାରିଲେ—''ମାଆ! ଏବେ ସବୁ ଭଲ ତ?'' ସେ କହିଲା—''ମହାରାଜ! ଆପଣଙ୍କ କୃପାରୁ ସବୁ ଭଲ। ବୋହୂ ଭାରି ଭଲ ହୋଇଗଲା।'' ମହାତ୍ମା ଜଣକ ବୋହୂକୁ ସବୁ କଥା ପଚାରିବାରୁ ସେ କହିଲା—''ମହାରାଜ! ଦିନେ ମୁଁ ଶାଶୁଙ୍କ ମୁହଁରେ ଉତ୍ତର ଦେଇ ଭୁଲ୍ କରି ଦେଇଥିଲି।'' ମହାତ୍ମା କହିଲେ—''ମାଆ! ସେହି ଦିନଠାରୁ ବାର ମାସ ଗଣାଯିବ, ତା' ପୂର୍ବ ଦିନଗୁଡ଼ିକ ଗଣାଯିବ ନାହିଁ। ଏକାଦଶୀ ଦିନ ଖୁଦକଣାଟିଏ ପାଟିରେ ପକାଇଦେଲେ ବି ବ୍ରତ ଭଙ୍ଗ ହୋଇଯାଏ।'' ବୋହୂ କହିଲା—''ଠିକ୍ ଅଛି, ଏଥର ମୁଁ ଲକ୍ଷ୍ୟ ଦେବି।'' ଏହିପରି ପ୍ରାୟ ଦେଢ଼ ବର୍ଷ ଦୁଇ ବର୍ଷରେ ଯାଇ ବାର ମାସ ପୂରଣ ହେଲା। ଶାଶୁ ବୋହୂଙ୍କ ମଧ୍ୟରେ ସ୍ନେହ ବଢ଼ିଲା।

ପ୍ରାୟ ଦୁଇ ବର୍ଷ ଅଢ଼େଇ ବର୍ଷ ପରେ ମହାତ୍ମା ଜଣକ ପୁଣି ଥରେ ସେହି ଗାଁକୁ ଆସିଲେ ଏବଂ ସେହି ଘରଲୋକଙ୍କୁ କହିଲେ—''ମୁଁ ଦିନେ ତୁମ ଘରେ ଭିକ୍ଷା ଗ୍ରହଣ କରିବି।'' ସେମାନେ ବହୁତ ଖୁସି ହେଲେ। ମହାତ୍ମା ଜଣକ ବଡ଼ ତ୍ୟାଗୀ ଥିଲେ। ସେ ଦୁଇ ଚାରି ଘରୁ ଭିକ୍ଷା ମାଗି ଖାଉଥିଲେ। ଲୁଗା ଚିରିଗଲା ପରେ କେହି ବେଶୀ ବାଧ୍ୟ କଲେ ଲୁଗା ଖଣ୍ଡେ ନେଉଥିଲେ। ଟଙ୍କାପଇସାର ନାଆଁଗନ୍ଧ ନାହିଁ। ସେ ତାଙ୍କ ଘରକୁ ଭିକ୍ଷା କରିବା ପାଇଁ ଯିବାରୁ 'ମହାତ୍ମା ଆସିଛନ୍ତି, ସତ୍‌ସଙ୍ଗ କରିବେ'

ବୋଲି ଭାବି ସେଠାରେ ବହୁତ ଲୋକ ରୁଣ୍ଡ ହୋଇଗଲେ । ମହାତ୍ମା ଜଣକ ଭିକ୍ଷା ଗ୍ରହଣ କଲେ ଓ ସତ୍‌ସଙ୍ଗ କଲେ । ତା'ପରେ କହିଲେ— "ଏହି ଘର ଲୋକଙ୍କୁ ଛାଡ଼ି ଅନ୍ୟ ଲୋକମାନଙ୍କୁ ଟିକେ ବାହାରକୁ ଯିବାକୁ କହିଦିଅ, ଏମାନଙ୍କ ସହିତ ଟିକେ କଥାବାର୍ତ୍ତା ହେବାର ଅଛି ।" ଘର ଲୋକେ ଅନ୍ୟମାନଙ୍କୁ ହାତଯୋଡ଼ି କହିଲେ—"ଭାଇମାନେ, ଏବେ ସତ୍ସଙ୍ଗ ତ ସରିଗଲା; ଆପଣମାନେ ଏବେ ଯାଆନ୍ତୁ ।" ସମସ୍ତେ ଗ୍ଲିଗଲେ । ଘର ଲୋକେ ମହାତ୍ମାଙ୍କ ପାଖରେ ବସିଲେ ।

ମହାତ୍ମା କହିଲେ—"ମୁଁ ଯେଉଁ ଡେଉଁରିଆ ତିଆରି କରି ଦେଇଥିଲି ତାହାକୁ ଆଣ ।" ସେମାନେ ଡେଉଁରିଆଟିକୁ ଆଣିଦେଲେ । ମହାତ୍ମା କହିଲେ, "ଏହାକୁ ଖୋଲି ପଢ଼ିଲ, ଏଥିରେ କ'ଣ ଲେଖାଅଛି?" ସେମାନେ ଡେଉଁରିଆଟିକୁ ଖୋଲି ପଢ଼ିଲେ । ସେଥିରେ ଖଣ୍ଡିଏ କାଗଜରେ ଲେଖା ହୋଇଥିଲା—

"ଶାଶୁବୋହୂ ଖୁସିରେ ରହିଲେ ସାଧୁର କ'ଣ ଗଲା ଏବଂ ଶାଶୁବୋହୂ କଳି କଲେ ସାଧୁର କ'ଣ ଗଲା!"

ମହାତ୍ମା ଜଣକ କହିଲେ—"ଶାଶୁବୋହୂ ଶାନ୍ତିରେ ରହିଲେ ମୋର କ'ଣ ଯାଉଛି ଏବଂ ସବୁ ଦିନ ଶାଶୁବୋହୂ କଳି କଲେ ମୋର କ'ଣ ଯାଉଛି? ମୋର କେବଳ ଏତିକି ଇଚ୍ଛା ଯେ, ତୁମ ଘରେ ଶାନ୍ତି ଓ ଆନନ୍ଦ ରହୁ । ଏ ଶକ୍ତି ମନ୍ତ୍ରରେ ନାହିଁ । ମୁଁ ଯେଉଁ ଦୁଇଟି ନିୟମ ବତାଇଥିଲି ଯେ, ମୁହଁରେ ଉତ୍ତର ଦେବୁନି ଓ ଯେମିତି କହିବେ ସେମିତି କରିବୁ— ଏ ଶକ୍ତି ସେହି ନିୟମ ଦୁଇଟିରେ ରହିଛି । ଶୁଣ, ଅନ୍ୟ କେହି ଯଦି କହେ, 'ମୁଁ ଅମୁକ ଦେବତାଙ୍କୁ ଉପାସନା କରି ସିଦ୍ଧି ଲାଭ କରିଛି; ତୁମକୁ ଏମିତି କରିଦେବି, ସେମିତି କରିଦେବି', ତେବେ ଡରିବନି! ସେଥିପାଇଁ ତୁମକୁ ଡେଉଁରିଆ ଖୋଲି ଦେଖାଇଲି । ମୁଁ ଡେଉଁରିଆ ଫେଉଁରିଆକୁ ମାନେ ନାହିଁ, କିନ୍ତୁ ତୁମର ବିଶ୍ୱାସ ହେବା ପାଇଁ ମୁଁ ଏପରି ଡେଉଁରିଆ ତିଆରି କରି ଦେଇଥିଲି । ଗୁରୁଜନଙ୍କ ମୁହଁରେ ଉତ୍ତର ନ ଦେବା ଏବଂ ତାଙ୍କର ଆଜ୍ଞା ପାଳନ କରିବା—ଏ ଦୁଇଟି ନିୟମ ଘରର ସବୁ ଲୋକ

ପାଳନ କଲେ ତୁମ୍ଭମାନଙ୍କର ଲୋକ ଓ ପରଲୋକ ମଙ୍ଗଳମୟ ହେବ। ଯଦି ଶାଶୁ ଏପରି କୌଣସି କାମ କରିବାକୁ କହନ୍ତି, ଯଦ୍ଦ୍ୱାରା ଭବିଷ୍ୟତରେ କ୍ଷତି ହେବାର ଜଣାପଡୁଥାଏ, ତେବେ ହାତଯୋଡ଼ି ଠିଆ ହୋଇଯିବ। ଯଦି ସେ ପଚ୍ଚାରନ୍ତି, କାହିଁକି ଠିଆ ହୋଇଛୁ, ତେବେ କହିଦେବ ଯେ "ଏ କାମ ମୁଁ କରିଦେବି ସତ, କିନ୍ତୁ ଏହାର ଫଳ ଭଲ ହେବନି।" ସେ ଯଦି ସେହି କାମ କରିବାକୁ ବାଧ୍ୟ କରନ୍ତି, ତେବେ କରିଦେବ। କିନ୍ତୁ କାମ ଖରାପ ହୋଇଗଲେ କେବେ ଏପରି ଖୁଣ୍ଟା ଦେବ ନାହିଁ ଯେ 'ଦେଖିଲ, ମୁଁ କହୁଥିଲି ନା, ତୁମେ ମାନିଲ ନାହିଁ!' ବରଂ ଏପରି ସ୍ଥିତିରେ ଅତ୍ୟନ୍ତ ନମ୍ରତା, ସରଳତା ଓ ନିରଭିମାନତା ରଖିବା ଉଚିତ।" ମହାତ୍ମାଙ୍କ କଥାର ପ୍ରଭାବ ସମସ୍ତଙ୍କ ଉପରେ ପଡ଼ିଲା।

ଭାଇଭଉଣୀମାନଙ୍କୁ ପ୍ରାର୍ଥନା ଯେ ତୁମ୍ଭେମାନେ ମଧ୍ୟ ଏହି ଅଦ୍ଭୁତ ଡେଉଁରିଆକୁ ବାନ୍ଧ। ଗୁରୁଜନଙ୍କ ମୁହଁରେ ଉତ୍ତର ଦେବୁ ନାହିଁ, ସେମାନଙ୍କର ଅପମାନ ଓ ତିରସ୍କାର କରିବୁ ନାହିଁ ଏବଂ ସେମାନେ ଯେପରି କହିବେ ସେପରି କରିବୁ ବୋଲି ନିୟମ କର। ତେଣିକି ଦେଖିବ, ତୁମ ଘରେ ଶାନ୍ତି ଓ ଆନନ୍ଦ ନିବାସ କରିବ।



## ୭. ମହାଜନଙ୍କୁ ଶିକ୍ଷା

ଜଣେ ବଡ଼ ମହାଜନ ଥିଲେ । ସେ ସକାଳୁ ସକାଳୁ ଉଠି ନଦୀରେ ସ୍ନାନ କରି ନିତ୍ୟକର୍ମ କରୁଥିଲେ । ଦିନକର କଥା । ସେ ସବୁଦିନ ପରି ସେଦିନ ବି ନଦୀକୁ ସ୍ନାନ କରିବା ପାଇଁ ଯାଉଥାନ୍ତି; ଏତିକିବେଳେ ଜଣେ ସନ୍ଥ ବୁଲି ବୁଲି ଆସି ସେହି ଘାଟ ପାଖରେ ପହଞ୍ଚିଲେ । ସେ ମହାଜନଙ୍କୁ କହିଲେ—"ମହାଜନେ! ରାମ-ରାମ!" ମହାଜନ କିଛି ନ କହିବାରୁ ପୁଣି ଥରେ କହିଲେ—"ମହାଜନେ! ରାମ-ରାମ!" ଏପରି ଦୁଇ ତିନିଥର କହିବା ପରେ ବି ମହାଜନ କିଛି କହିଲେ ନାହିଁ, ବରଂ କିଛି ସମୟ ପରେ ମହାଜନ ତାଙ୍କୁ ମାଗିଖିଆ ବୋଲି ଭାବି କହିଲେ—"ଯା' ଯା' ଏଠୁ ପଳା ।" ସନ୍ଥ ଦେଖିଲେ, "ଏହାର ଅଭିମାନ ବେଶୀ ବଢ଼ିଗଲାଣି, ଭଗବାନଙ୍କର ନାମ ବି ଧରୁ ନାହିଁ । ମୁଁ ଭଗବାନଙ୍କ ନାମ ନେବାକୁ କହୁଛି, ଅଥଚ ଇଏ ମୋତେ ଯା' ଯା' କହୁଛି!"

ଧନୀଲୋକମାନଙ୍କର ପ୍ରାୟ ଭ୍ରମ ଧାରଣା ଥାଏ ଯେ ସେମାନଙ୍କ ଠାରୁ କାଳେ କିଏ କିଛି ମାଗି ନେଇଯିବ କି? ତେଣୁ ସେମାନେ ସମସ୍ତଙ୍କୁ ଡରନ୍ତି । ସେମାନେ ଗରିବ, ସାଧୁ, ବ୍ରାହ୍ମଣ, ରାଜା, ଚୋର ପ୍ରଭୃତି ସମସ୍ତଙ୍କୁ ଡରନ୍ତି । ସେମାନଙ୍କର ଏଥିପାଇଁ ମଧ୍ୟ ଡର ଥାଏ ଯେ ଅଧିକ ପୁଅ, ନାତି ହୋଇଗଲେ ଧନ ବାଣ୍ଟି ହୋଇଯିବ ।

ସନ୍ଥ ବିଚାର କଲେ—ଏହାକୁ ଶିକ୍ଷା ଦେବାକୁ ପଡ଼ିବ । ମହାଜନ ସ୍ନାନ କରିବାକୁ ଯାଇଥାନ୍ତି । ସେତିକିବେଳେ ନିଜ ସିଦ୍ଧି ବଳରେ ମହାଜନଙ୍କ ବେଶ ଧରି ସନ୍ଥ ତାଙ୍କ ଘରକୁ ଚାଲିଗଲେ । ଦରୁଆନ କହିଲା—"ଆପଣ ଆଜି ଏତେ ଶୀଘ୍ର ଫେରି ଆସିଲେ ଯେ?" ସେ କହିଲେ—"ଗୋଟେ ବହୁରୂପୀ ମୋ ପରି ବେଶ ଧରି ଆମ ସାହିକୁ ଆସିଛି, ମୁଁ ଭାବିଲି କାଳେ ଘରେ ପଶି କିଛି ଅସୁବିଧା କରିବ । ତେଣୁ ଶୀଘ୍ର ଫେରି ଆସିଲି । ତୁମେ ସାବଧାନ ରହିବ! ସେ ଆସିଲେ ତାକୁ ଭିତରକୁ ଛାଡ଼ିବନି ।"

ମହାଜନ ସବୁଦିନ ଘରେ ଯେପରି ପୂଜାପାଠ କରୁଥିଲେ, ମହାଜନ ବେଶ ଧରିଥିବା ସଦ୍ଧ ଜଣକ ସେହିପରି ପୂଜାପାଠ କଲେ। ତା'ପରେ ସ୍ନାନ କରିବାକୁ ଯାଇଥିବା ମହାଜନ ସବୁଦିନ ପରି ଓଦାଲୁଗା ଓ ପାଣିଢାଳ ଧରି ଫେରିଲେ। ଘରେ ପଶିଲା ବେଳକୁ ଦରୁଆନ ତାଙ୍କୁ ଅଟକାଇଦେଇ କହିଲା—''ଏ! କୁଆଡ଼େ ଯାଉଛୁ? ଯା, ଏଠୁ ପଳା!'' ମହାଜନ କହିଲେ—''ତୁ ଭାଙ୍ଗ ଖାଇଛୁ କିରେ? ତତେ ବୋଧେ ନିଶା ଧରିଛି? ଘଟଣା କ'ଣ? ତୁ ମୋ ଗ୍ୱକର ହୋଇ ମୋ ଉପରେ ମାଲିକପଣ ଦେଖାଉଛୁ।'' ଦରୁଆନ କହିଲା—''ଏଠାରୁ ଯାଉଛୁ ନା ଦେଖିବୁ, ମୁଁ ତତେ ଭିତରକୁ ଛାଡ଼ିବିନି।'' ମହାଜନ ପୁଅକୁ ଡାକ ପକାଇଲେ। ପୁଅ ଭିତରୁ କହିଲା—''ପଳେଇଯା କହୁଛି; ଭିତରକୁ ଆସିଲେ ଦେଖିବୁ!'' ଅନ୍ୟ ପୁଅମାନେ ମଧ୍ୟ ଏପରି କହିବାକୁ ଲାଗିଲେ। ଯାହାକୁ ପଗ୍ୱରିଲେ, ସେ ଧକ୍କାଏ ଦଉଥାଏ। ମହାଜନ ଭାବିଲେ—''ଇଏ କି ଲୀଳା? ମୋତେ ଭିତରକୁ ଛାଡୁ ନାହାନ୍ତି!'' ଏପରି ଭାବି ସେ ବିଚରା ଏପଟ ସେପଟ ବୁଲିଲେ।

ଏବେ କରିବେ ବା କ'ଣ? ସବୁଥିରୁ ନିରାଶ ହୋଇ ସେ ରାଜାଙ୍କ ପାଖକୁ ଯାଇ ନିଜର ଦୁଃଖ ଜଣାଇଲେ। ମହାଜନଙ୍କର ରାଜ୍ୟରେ ବହୁତ ପ୍ରତିଷ୍ଠା ଥିଲା। ଆଜି ତାଙ୍କୁ ଏପରି ସ୍ଥିତିରେ ଦେଖି ରାଜା କହିଲେ—''ଘଟଣା କ'ଣ? ଆଜି ଓଦାଲୁଗା ପିନ୍ଧି ଓ ପାଣିଢାଳ ଧରି କାହିଁକି ବୁଲୁଛ?'' ସେ କହିଲେ—''ମହାରାଜ! କାହିଁକି ବୁଲୁଛି କ'ଣ କହିବି! ମୋ ଘରେ ଗୋଟେ ବହୁରୂପୀ ପଶିଗଲା ଏବଂ ମୋତେ ବାହାର କରିଦେଲା!'' ରାଜା କହିଲେ—'' ଆଗରେ ପଛରେ ଗ୍ୱରି ଗ୍ୱରିଟା ଘୋଡ଼ା ଯାଉଥିବା ଲୋକର ଆଜି ଏ କି ଦଶା!'' ରାଜା ନିଜର ସୈନ୍ୟମାନଙ୍କୁ କହିଲେ—''ଦେଖିବଟି ରେ, ସେ ବହୁରୂପୀ କିଏ?'' ଘରେ ଖବର ପହଞ୍ଚିଲା। ଘରଲୋକେ କହିଲେ—'' ଆଚ୍ଛା! ସେ ଯାଇ ରାଜାଙ୍କ ପାଖରେ ପହଞ୍ଚି ଗଲାଣି! ପୂରା ନକଲି ବହୁରୂପୀ। ଆମ ବାପା ତ ଆମ ଘରେ ବସିଛନ୍ତି।'' ରାଜାଙ୍କୁ ସୈନ୍ୟମାନେ କହିଲେ ଯେ ମହାଜନ ଘରେ ଅଛନ୍ତି। ରାଜା

କହିଲେ—"ଯାଅ, ମହାଜନକୁ କହିବ, ରାଜା ଡାକୁଛନ୍ତି।" ମହାଜନ ବେଶ ଧରିଥିବା ସନ୍ଥ ଖୁବ୍ ଆଡ଼ମ୍ବରର ସହିତ ଯାଇ ରାଜଦରବାରରେ ପହଞ୍ଚିଲେ ଓ କହିଲେ—"ମହାରାଜ! କେମିତି କ'ଣ ମନେ ପକାଇଲେ; ଆଦେଶ କରନ୍ତୁ?"

ଦୁଇଜଣ ଦେଖିବାକୁ ଏକାପରି। ରାଜା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। ଚିହ୍ନିବା କିପରି? ମନ୍ତ୍ରୀମାନଙ୍କୁ ପଚ୍ଚାରିବାରୁ ସେମାନେ କହିଲେ—"ମହାରାଜ! ଅସଲି ମହାଜନ କିଏ, କିଛି ଚିହ୍ନି ହେଉ ନାହିଁ।" ପରୀକ୍ଷା କରିବା ପାଇଁ କୁହାଗଲା। ମହାଜନ ବେଶ ଧରିଥିବା ସନ୍ଥ ଜଣକ କହିଲେ—"ହିସାବ ଖାତା ଅଣାଯାଉ, ହିସାବ ଖାତାରେ ଯାହା ହିସାବ ହୋଇଥିବ, ମୁଁ ଖାତା ନ ଦେଖି କହିଦେବି।" ତାଙ୍କୁ ସିଦ୍ଧି ଜଣାଥିଲା, ତେଣୁ ଏହା ତାଙ୍କ ପକ୍ଷେ ଅସମ୍ଭବ ନ ଥିଲା। ହିସାବ ଖାତା ଅଣାଗଲା। ମହାଜନ ବେଶ ଧରିଥିବା ସନ୍ଥ କହିଲେ—"ଅମୁକ ବର୍ଷ ଅମୁକ ଘର ତିଆରିରେ ଏତିକି ଖର୍ଚ୍ଚ ହୋଇଛି, ସେସବୁ ହିସାବ ଅମୁକ ଖାତାର ଅମୁକ ଜାଗାରେ ଲେଖାଅଛି।" ଦେଖିଲା ବେଳକୁ ସବୁ ମିଳିଲା। ମହାଜନେ କାବା ହୋଇ ଚାହିଁ ରହିଲେ। ବେଶଧାରୀ ପ୍ରକୃତ ମହାଜନ ବୋଲି ପ୍ରମାଣିତ ହୋଇଗଲା ଏବଂ ପ୍ରକୃତ ମହାଜନଙ୍କୁ ଦଣ୍ଡ ଆଦେଶ ହେଲା। କିନ୍ତୁ ସନ୍ଥ କହିବାରୁ ତାଙ୍କୁ ଛାଡ଼ି ଦିଆଗଲା।

ତା'ପର ଦିନ ମହାଜନ ଧୋତି ଓ ଢାଳ ନେଇ ସ୍ନାନ କରିବାକୁ ଗଲେ। ସନ୍ଥ ସେଠାରେ ବସିଥାଆନ୍ତି। ମହାଜନଙ୍କୁ ଦେଖି ସନ୍ଥ କହିଲେ—"ରାମ-ରାମ!" ସେତେବେଳେ ଯାଇ ମହାଜନଙ୍କ ଆଖି ଫିଟିଲା। ସେ ବୁଝିଗଲେ ଯେ, ଏସବୁ ସନ୍ଥଙ୍କର ଚମତ୍କାରିତା। ସନ୍ଥ କହିଲେ—"ତୁମେ ଏଥର ଭଗବାନଙ୍କ ନାମ ସ୍ମରଣ କର, କାହାକୁ ଏପରି ତିରସ୍କାର କରିବ ନାହିଁ, ଅପମାନିତ କରିବ ନାହିଁ। ଏବେ ତୁମେ ନିଜ ଘରକୁ ଯାଅ।" ସେହି ମହାଜନ କାନମୁଣ୍ଡ ଆଉଁସି ସବୁଦିନ ପରି ଘରକୁ ଫେରି ଆସିଲେ। ସେହିଦିନୁ ସମସ୍ତଙ୍କୁ ରାମ-ରାମ କହିଲେ।



# ୮. ପାପର ବାପ

ଜଣେ ପଣ୍ଡିତ କାଶୀରୁ ପଢ଼ାସାରି ଘରକୁ ଫେରିଲେ । ତାଙ୍କର ବିବାହ ହେଲା, ସ୍ତ୍ରୀ ଆସିଲା । ଏପରି କେତେ ଦିନ ବିତିଗଲା । ଦିନେ ତାଙ୍କ ସ୍ତ୍ରୀ ତାଙ୍କୁ ପଗ୍ଚରିଲା—"ସ୍ୱାମୀ! ପାପର ବାପ କିଏ, ମୋତେ କହନ୍ତୁ ।" ପଣ୍ଡିତେ ପୋଥି ଦେଖିଲେ, ହେଲେ କିଛି ଉତ୍ତର ମିଳିଲା ନାହିଁ । ନିରବ ରହିଲେ । ସ୍ତ୍ରୀର ପ୍ରଶ୍ନର ଉତ୍ତର ଦେଇ ନ ପାରିବାରୁ ତାଙ୍କୁ ଭାରି ଲାଜ ଲାଗିଲା । ସେ ପୁଣିଥରେ କାଶୀ ଯିବାକୁ ବାହାରିଲେ । ରାସ୍ତା କଡ଼ରେ ଜଣେ ବେଶ୍ୟା ରହୁଥିଲା । ପଣ୍ଡିତେ କାଶୀରୁ ପଢ଼ାପଢ଼ି କରି ଆସିଛନ୍ତି ବୋଲି ସେ ଶୁଣିଥିଲା । ପଣ୍ଡିତେ ଯିବା ବାଟରେ ଭେଟି ପଗ୍ଚରିଲା—ପଣ୍ଡିତ ମହାଶୟ! କୁଆଡ଼େ ଯାଉଛନ୍ତି । ପଣ୍ଡିତ କହିଲେ— "କାଶୀ ଯାଉଛି ।" "କାଶୀ କାହିଁକି ଯାଉଛନ୍ତି, ଆପଣ ପରା କାଶୀରୁ ପଢ଼ିସାରି ଆସିଥିଲେ?" ସେ କହିଲେ—"କ'ଣ କରିବି; ଘରେ ମୋ ସ୍ତ୍ରୀ ମୋତେ 'ପାପର ବାପ କିଏ' ବୋଲି ପ୍ରଶ୍ନ ପଗ୍ଚରିଲା । ମୁଁ ଉତ୍ତର ଦେଇ ପାରିଲି ନାହିଁ । ଏବେ ଆହୁରି ପଢ଼ି ଦେଖିବି, ପାପର ବାପ କିଏ ।" ବେଶ୍ୟା କହିଲା—"ଆପଣ ଏତେ ଦୂର କାହିଁକି ଯିବେ, ଏହା ତ ଆପଣଙ୍କୁ ମୁଁ ବତାଇ ଦେଇ ପାରିବି ।"

ଭଲ ହେଲା, ଏତେ ଦୂର ଯିବାକୁ ପଡ଼ିବନି । ବେଶ୍ୟା କହିଲା— "ଆପଣ ଘରକୁ ଯାଆନ୍ତୁ, ପାପର ବାପ କିଏ, ମୁଁ ବତାଇଦେବି ।" ଅମାବାସ୍ୟା ପୂର୍ବଦିନ ବେଶ୍ୟା ପଣ୍ଡିତ ମହାଶୟଙ୍କୁ ତା'ଘରକୁ ଡାକିଲା । ତାଙ୍କ ଆଗରେ ଶହେ ଟଙ୍କା ଭେଟି ରଖି ଦେଇ କହିଲା—"ପଣ୍ଡିତ ମହାଶୟେ! ଆପଣ କାଲି ମୋ ଘରେ ଭୋଜନ କରନ୍ତୁ ।" ପଣ୍ଡିତ କହିଲେ—"ଅସୁବିଧା କ'ଣ, କରିବି!" ପଣ୍ଡିତେ ରୋଷେଇ କରିବେ ବୋଲି ବେଶ୍ୟା ସବୁ ଜିନିଷ ଯୋଗାଡ଼ କରିଦେଲା । ପଣ୍ଡିତ ମହାଶୟ ଆସି ରୋଷେଇ କରିବା ପାଇଁ ବସିବାରୁ ସେ କହିଲା—"ଦେଖନ୍ତୁ,

ଭାତ ଆଦି ସଙ୍କୁଡ଼ି ଜିନିଷ ସିନା ସମସ୍ତଙ୍କ ହାତରୁ ଖାଉ ନାହାନ୍ତି, ଛଣାଛଣି ନିସଙ୍କୁଡ଼ି ଜିନିଷ ତ ଆପଣ ଖାଉଛନ୍ତି। ମୁଁ ରାନ୍ଧି ଦେଉଛି, ଆପଣ ଖାଇବେ।'' ଏହା କହି ସେ ଆଉ ଶହେ ଟଙ୍କା ତାଙ୍କୁ ଦେଲା। ପଣ୍ଡିତେ ଭାବିଲେ—''ମୁଁ ତ ଅନ୍ୟମାନଙ୍କ ହାତରୁ ନିସଙ୍କୁଡ଼ି ଜିନିଷ ଖାଉଛି, ଏଥିରେ ଅସୁବିଧା କ'ଣ?'' ଏହା ଭାବି ସେ ରାଜି ହୋଇଗଲେ।

ବେଶ୍ୟା ରୋଷେଇ କରି ସାରି ପଣ୍ଡିତ ମହାଶୟଙ୍କୁ ବାଢ଼ିଦେଲା। ବାଢ଼ିସାରି ଆଉ ଶହେ ଟଙ୍କା ପଣ୍ଡିତଙ୍କ ଆଗରେ ରଖିଦେଲା ଓ କହିଲା—''ଆଜ୍ଞା! ମୁଁ ରୋଷେଇ କରିଥିବା ଜିନିଷକୁ ଯଦି ଆପଣ ଖାଉଛନ୍ତି, ତେବେ ମୁଁ ମୋ ହାତରେ ଆପଣଙ୍କୁ ଟିକେ ଖୁଆଇ ଦେଲେ ଅସୁବିଧା କ'ଣ? ଏଇ ହାତରେ ତ ରୋଷେଇ କରିଛି; ଏତିକି କୃପା କରନ୍ତୁ।'' ପଣ୍ଡିତ ମହାଶୟେ ତା'କଥାରେ ରାଜି ହୋଇଗଲେ। ସେ ପଣ୍ଡିତଙ୍କୁ ଖୁଆଇବା ପାଇଁ ଗୋଟିଏ ଗ୍ରାସ ତାଙ୍କ ମୁହଁ ପାଖକୁ ନେଲା। ପଣ୍ଡିତେ ଖାଇବା ପାଇଁ ପାଟି ଖୋଲିଲା ବେଳକୁ ବେଶ୍ୟା ପଣ୍ଡିତଙ୍କ ଗାଲରେ ଠୋ' କରି ଗୋଟେ ଚାପୁଡ଼ା ଦେଲା ଏବଂ କହିଲା—''ଏପର୍ଯ୍ୟନ୍ତ ତୁମର ଜ୍ଞାନ ପଶିଲାନି? ଖବରଦାର, ମୋ ଘରର ଅନ୍ନ ଖାଉଛ! ମୁଁ ତୁମ ଭଳି ପଣ୍ଡିତଙ୍କର ଧର୍ମ ନଷ୍ଟ କରିବାକୁ ଚାହେଁ ନାହିଁ। କେବଳ ପାପର ବାପ କିଏ, ସେ କଥା ଜଣାଇବା ପାଇଁ ମୁଁ ଏପରି କଲି।'' ଅର୍ଥାତ୍ ବେଶ୍ୟା ପଣ୍ଡିତଙ୍କ ଆଗରେ ଶହେ ଶହେ ଟଙ୍କା ରଖି ଚାଲିବାରୁ ପଣ୍ଡିତେ କାଣ୍ଡଜ୍ଞାନ ହରାଇ ବସିଲେ।

ଏଥିରୁ କ'ଣ ସିଦ୍ଧ ହେଲା? ପାପର ବାପ କିଏ? ପାପର ବାପ ହେଲା ଟଙ୍କା ପ୍ରତି ଲୋଭ! **'ତ୍ରିବିଧଂ ନରକସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ'** (ଗୀତା ୧୬।୨୧)। କାମ, କ୍ରୋଧ ଓ ଲୋଭ—ଏ ତିନୋଟି ନରକର ଦ୍ୱାର।

**ପର ଉପଦେସ କୁସଲ ବହୁତେରେ। ଜେ ଆଚରହିଁ ତେ ନର ନ ଘନେରେ॥**

(ମାନସ, ଲଙ୍କାକାଣ୍ଡ ୭୮।୧)

ଅନ୍ୟମାନଙ୍କୁ ଉପଦେଶ ଦେବାରେ ତ ଲୋକେ କୁଶଳ, କିନ୍ତୁ

ଉପଦେଶ ଅନୁସାରେ ନିଜେ ଆଚରଣ କରୁଥିବା ଲୋକ ବିରଳ।

ମନୁଷ୍ୟ କ'ଣ କରିବା ଉଚିତ ଓ କ'ଣ ନ କରିବା ଉଚିତ, ସେଥିପ୍ରତି ଲକ୍ଷ୍ୟ ଦେଉ ନାହିଁ। ନିଜର ସ୍ୱାର୍ଥ ପଡ଼ିଲେ, ସବୁ ପଣ୍ଡିତପଣିଆ ଭୁଲିଯାଉଛି, ସେସବୁ ମନେ ପଡୁ ନାହିଁ।

**ପରୋପଦେଶବେଳାୟାଂ ଶିଷ୍ଟାଃ ସର୍ବେ ଭବନ୍ତି ହି।**
**ବିସ୍ମରନ୍ତୀହ ଶିଷ୍ଟତ୍ୱଂ ସ୍ୱକାର୍ଯ୍ୟେ ସମୁପସ୍ଥିତେ॥**

ଅନ୍ୟମାନଙ୍କୁ ଉପଦେଶ ଦେଲାବେଳେ ଯେତେ ପଣ୍ଡିତପଣିଆ ବାହାରେ, ନିଜ କାମ ବେଳକୁ ଯଦି ସେତିକି ଆସିଯାଆନ୍ତା, ତେବେ ମନୁଷ୍ୟ କୃତାର୍ଥ ହୋଇଯାଆନ୍ତା। ଜାଣିବାରେ ନ୍ୟୂନତା ନାହିଁ, ତାହାକୁ କାର୍ଯ୍ୟରେ ପରିଣତ କରିବାରେ ନ୍ୟୂନତା।



# ୯. ଶୁଦ୍ଧ ହରିକଥା

ମହାରାଷ୍ଟ୍ରରେ 'ସମର୍ଥ ଗୁରୁ ରାମଦାସ ବାବା' ନାମକ ଜଣେ ପ୍ରସିଦ୍ଧ ସନ୍ଥ ଥିଲେ । ତାଙ୍କ ବିଷୟରେ ଗୋଟିଏ କଥା ଅଛି । ସେ ଥିଲେ ହନୁମାନଙ୍କର ଜଣେ ଭକ୍ତ । ତାଙ୍କୁ ହନୁମାନ ଦର୍ଶନ ଦେଉଥିଲେ । ଥରେ ବାବାଜୀ ହନୁମାନଙ୍କୁ କହିଲେ, "ପ୍ରଭୁ! ତୁମେ ଦିନେ ସବୁ ଲୋକଙ୍କୁ ଦର୍ଶନ ଦିଅ ।" ହନୁମାନ କହିଲେ, "ତୁ ଯଦି ସବୁ ଲୋକଙ୍କୁ ଏକାଠି କରିବୁ, ମୁଁ ଦର୍ଶନ ଦେବି ।" ବାବାଜୀ କହିଲେ, "ମୁଁ ହରିକଥା କରି ସବୁ ଲୋକଙ୍କୁ ଏକାଠି କରିଦେବି ।" ହନୁମାନ କହିଲେ, "ଶୁଦ୍ଧ ହରିକଥା କରିବୁ । ହରିକଥା ହେଲେ ଲୋକେ ଆସନ୍ତି, ଶୁଦ୍ଧ ହରିକଥା ହେଲେ ମୁଁ ଯିବି ।" ବାବାଜୀ କହିଲେ, "ହଁ, ଶୁଦ୍ଧ ହରିକଥା ହିଁ କରିବି ।"

ସନ୍ଥ ଓ ରାଜଗୁରୁ ହୋଇଥିବାରୁ ବାବାଜୀଙ୍କର ଏତେ ପ୍ରଭାବ ଥିଲା ଯେ, ସେ ଯେଉଁଠିକି ଯାଆନ୍ତି, ସେଠାରେ ହଜାର ହଜାର ଲୋକ ରୁଣ୍ଡ ହୋଇଯାଆନ୍ତି । ସେ କୌଣସି ସହରରେ ଯାଇ କହିଲେ—"ଆଜି ରାତିରେ ସହର ବାହାରେ ଅମୁକ ପଡ଼ିଆରେ ହରିକଥା ହେବ ।" ଖବର ଶୁଣିବାମାତ୍ରେ ଲୋକେ ସମସ୍ତ ପ୍ରସ୍ତୁତି କରିବାରେ ଲାଗି ପଡ଼ିଲେ । ବିଜୁଳି ବତି ଲାଗିଗଲା, ଦରି ବିଛା ହୋଇଗଲା । ଯଥା ସମୟରେ ବହୁତ ଲୋକ ଏକତ୍ରିତ ହୋଇଗଲେ, ଗାୟକ ଓ ବାଦ୍ୟକମାନେ ଆସି ନିଜ ନିଜ ସ୍ଥାନରେ ବସିଗଲେ ଓ କୀର୍ତ୍ତନ ଆରମ୍ଭ ହେଲା । ମଝିରେ ମଝିରେ ବାବାଜୀ ଭଗବାନଙ୍କର ଚରିତ ଶୁଣାଉଥାଆନ୍ତି ଓ ତା'ପରେ କୀର୍ତ୍ତନ କରାଉଥାଆନ୍ତି । ଏମିତି କରି କରି ସେ କୀର୍ତ୍ତନରେ ମଗ୍ନ ହୋଇଗଲେ । ଲୋକେ ଆଶା କରିଥିଲେ ଯେ, ବାବାଜୀ କଥା ଶୁଣାଇବେ, କିନ୍ତୁ ସେ କୀର୍ତ୍ତନ ହିଁ କରି ଚାଲିଲେ । ଲୋକଙ୍କର ତ ଅସଲି ଭାବ ନ ଥିଲା; ତେଣୁ ସେମାନେ ଭାବିଲେ, 'ଏମିତି କୀର୍ତ୍ତନ ତ ଆମେ ନିଜ ଘରେ କରି ପାରିବା; ଏଠାରେ କେତେବେଳଯାଏ ବସିବା'! ତେଣୁ ସେମାନେ ଧୀରେ ଧୀରେ ଜଣେ ଜଣେ ଖସିବା ଆରମ୍ଭ କଲେ ।

ସତରେ ସେମାନେ ନିଜ ଘରେ ଯେ କୀର୍ତ୍ତନ କରିବେ ତା'ନୁହେଁ; ଘରେ କୀର୍ତ୍ତନ କରିବା ବୋଲି କହିବାଟା ସେଠାରୁ ଉଠିବା ପାଇଁ ଏକ ବାହାନାମାତ୍ର। ବାବାଜୀଙ୍କ ପାଖରେ ବସିଥିବା ଲୋକେ କାନରେ ପଇତା ଦେଇ ପରିସ୍ରା କରିଯିବା ନାଁଆରେ ଜଣେ ଜଣେ ହୋଇ ଉଠିଲେ! କିଛି ସମୟ ପରେ ସମସ୍ତେ ଚାଲିଗଲେ। ଗାୟକ ଓ ବାଦ୍ୟକମାନେ ମଧ୍ୟ ଧୀରେ ଧୀରେ ବାଟ କାଟିଲେ। ବାବାଜୀ ଆଖି ବୁଜି ନିଜ ଭାବନାରେ ଆନନ୍ଦର ସହିତ ପୂର୍ବପରି କୀର୍ତ୍ତନ କରୁଥିଲେ। ସେ ହନୁମାନଙ୍କ ଆଜ୍ଞାନୁସାରେ ଶୁଦ୍ଧ ହରିକଥା କରୁଥିଲେ। ଲାଇଟ୍‌ବାଲା ଚାଲିଗଲା। କେବଳ ରହିଗଲେ ଦରି ବିଛାଇଥିବା ଲୋକ। କ'ଣ କରିବେ, ସେମାନଙ୍କୁ ବଡ଼ ଅସୁବିଧା ହେଲା। ବାବାଜୀ ତ ଆନନ୍ଦରେ ବିଭୋର ହୋଇ ନାଚୁଛନ୍ତି, ଦରି ଉଠାଇବେ କେମିତି! ସେମାନେ ଏକ ଉପାୟ ପାଞ୍ଚିଲେ। ବାବାଜୀ ଯେତେବେଳେ ନାଚ କରି କରି ଆରପଟକୁ ଯାଉଥାଆନ୍ତି, ସେମାନେ ଏପଟୁ ଦରି ଗୁଡ଼େଇ ଗୁଡ଼େଇ ନିଅନ୍ତି ଏବଂ ବାବାଜୀ ଯେତେବେଳେ ନାଚ କରି କରି ଏପଟକୁ ଆସନ୍ତି, ସେମାନେ ଆରପଟୁ ଦରିକୁ ଗୁଡ଼େଇ ଆଣନ୍ତି। ଏପରି କରି ସେମାନେ ମଧ୍ୟ ଚାଲିଗଲେ। ସମସ୍ତେ ଯିବାପରେ ହନୁମାନ ଆବିର୍ଭୂତ ହେଲେ। ବାବାଜୀ ହନୁମାନଙ୍କୁ କହିଲେ—"ପ୍ରଭୁ! ସମସ୍ତଙ୍କୁ ଦର୍ଶନ ଦିଅନ୍ତୁ!" ହନୁମାନ କହିଲେ—"ସମସ୍ତେ କାହାନ୍ତି, କାହିଁ କେହି ତ ଦେଖାଯାଉ ନାହାନ୍ତି?" ସେତେବେଳକୁ ବାବାଜୀଙ୍କୁ ଛାଡ଼ି ସେଠାରେ ଆଉ କେହି ନ ଥାଆନ୍ତି!

ଏହିପରି ଭାବର ସହିତ କେବଳ ଭଗବନ୍ନାମ ସଂକୀର୍ତ୍ତନ କରିବା ହିଁ 'ଶୁଦ୍ଧ ହରିକଥା'। ଏହି ଶୁଦ୍ଧ ହରିକଥାରେ ଭଗବାନ ସାକ୍ଷାତ୍ ଆବିର୍ଭୂତ ହୁଅନ୍ତି।



# ୧୦. ଘୋଡ଼ା ଅଟକିଗଲା

ସନ୍ଥ ଓ ମହାତ୍ମାମାନେ ଆମ ପାଇଁ ଅଧିକ ପ୍ରଯତ୍ନଶୀଳ। ମାଆର ଯେପରି ସନ୍ତାନ କଥା ମନେ ପଡ଼େ, ସନ୍ଥ ଓ ମହାତ୍ମାଙ୍କର ଆମ ପ୍ରତି ଠିକ୍ ସେହି ଭାବ। ଶିଶୁକୁ ଭୋକ ଲାଗିଲେ ମାଆ ନିଜେ ଆସି ଖୁଆଇ ଦିଏ, ସେହିପରି ସନ୍ଥ ଓ ମହାତ୍ମାମାନେ ପ୍ରକୃତ ଜିଜ୍ଞାସୁ ନିକଟକୁ ଟାଣି ହୋଇ ଆସନ୍ତି। ଏ ବିଷୟରେ ଗୋଟିଏ କାହାଣୀ ଶୁଣାଯାଏ—

ଜଣେ ଗୃହସ୍ଥ ଉଚ୍ଚ ସ୍ତରର ତତ୍ତ୍ୱଜ୍ଞ ଓ ଜୀବନ୍ମୁକ୍ତ ମହାପୁରୁଷ ଥିଲେ। ଥରେ ସେ ନିଜ ଘୋଡ଼ାରେ ବସି କୌଣସି ଗାଁଆକୁ ଯାଉଥିଲେ। ଯାଉ ଯାଉ ଘୋଡ଼ା ଗାଁଆ ବାଟ ଛାଡ଼ି ଅନ୍ୟ ବାଟରେ ଚାଲିବା ଆରମ୍ଭ କଲା। ସେ ଲଗାମ ଲଗାଇ ଯେତେ ଚେଷ୍ଟା କଲେ ବି ହେଲାନି; ଘୋଡ଼ା ଅନ୍ୟ ବାଟରେ ହିଁ ଚାଲିଲା। ସେଥିରୁ ସେ ଭାବିଲେ, ଠିକ୍ ଅଛି, ଘୋଡ଼ା ମନ ଯୁଆଡ଼େ, ସେ ସେଆଡ଼େ ଯାଉ। ଆଜି ସେପଟ ରାସ୍ତାରେ ଯିବା। ଟିକେ ବୁଲାଣି ପଡ଼ିବ, ନ ହେଲେ ଅନ୍ୟ କୌଣସି ଅସୁବିଧା ନାହିଁ। ଘୋଡ଼ା ଯାଉ ଯାଉ ଜଣକ ଦ୍ୱାର ଦେଶରେ ଅଟକିଗଲା। ସେତେବେଳକୁ ସମୟ ଅଧିକ ହୋଇ ଯାଇଥାଏ। ସେହି ଗୃହସ୍ଥ ସନ୍ଥ ଜଣକ ଘୋଡ଼ାରୁ ତଳକୁ ଓହ୍ଲାଇ ସେହି ଘର ଭିତରକୁ ଗଲେ। ସେଠାରେ ଜଣେ ଭଦ୍ରଲୋକ ବସିଥିଲେ। ସେ ଆଗନ୍ତୁକ ମହାପୁରୁଷଙ୍କର ଖୁବ୍ ଆଦର ସତ୍କାର କଲେ। ସେ ଆଗରୁ ତାଙ୍କ ନାଁଆ ଶୁଣିଥିଲେ ଓ ଜାଣିଥିଲେ ଯେ, ସେ ଜଣେ ମହାପୁରୁଷ, ଜଣେ ସନ୍ଥ। ଭଦ୍ରଲୋକ ଜଣକ ଥିଲେ ସାଧକ। ସେ ସନ୍ଥ ମହାପୁରୁଷଙ୍କ ନିକଟକୁ ଯାଇ ତାଙ୍କୁ ସାଧନାର ମାର୍ଗ ପଚାରିବା ପାଇଁ କେତେଥର ଭାବିଥିଲେ। ଆଜି ଭଗବାନଙ୍କ କୃପାରୁ ତାଙ୍କ ଘରକୁ ଛାଏଁ ସନ୍ଥରୂପଧାରୀ ଗଙ୍ଗା ଆସିଗଲେ। ସେ ସେହି ଗୃହସ୍ଥ ସନ୍ଥଙ୍କୁ ଭୋଜନାଦି କରାଇଲେ। ସତ୍ସଙ୍ଗ ଚାଲିଲା। ଭଦ୍ରଲୋକ ଯାହା ପଚାରିଲେ ସନ୍ଥ ସେ ସବୁର ଯଥାର୍ଥ ସମାଧାନ କରିଦେଲେ। ଯିବା ସମୟରେ ଗୃହସ୍ଥ ସନ୍ଥ ଜଣକ କହିଲେ—"ଭାଇ! ମୋର ଠିକଣା ରଖ। କେତେବେଳେ ଯଦି

କୌଣସି ସନ୍ଦେହ ହୁଏ, ମୋ ପାଖକୁ ଚାଲିଯିବ, ନ ହେଲେ, ମୋତେ ଖବର କଲେ ମୁଁ ଆସିଯିବି ।'' ଏହା ଶୁଣି ଭଦ୍ରଲୋକ କହିଲେ—''ଆଜ୍ଞା! ଏବେ ଆପଣଙ୍କୁ କିଏ ଖବର ଦେଇଥିଲା ଯେ, ଆପଣ ଆସିଲେ?'' ସେ କହିଲେ—''ମୋ ଘୋଡ଼ା ଅଟକି ଗଲା, ତେଣୁ ମୋତେ ଆସିବାକୁ ପଡ଼ିଲା ।'' ଭଦ୍ରଲୋକ କହିଲେ—''ଏହିପରି ଆଉ କେବେ ଘୋଡ଼ା ଅଟକି ଗଲେ ପୁଣିଥରେ ଆସିଯିବେ ।'' ତାତ୍ପର୍ଯ୍ୟ ହେଲା, ସାଧକର ପ୍ରକୃତ ଜିଜ୍ଞାସା ଥିଲେ, ସନ୍ଥଙ୍କର ଘୋଡ଼ା ଏପରି ଅଟକିଯାଏ ।

ସନ୍ଥଙ୍କ କଥା କ'ଣ କହିବା, ଭଗବାନଙ୍କ କାନରେ ମଧ୍ୟ ହୃଦୟର ପ୍ରାର୍ଥନା ଅବିଳମ୍ବେ ପହଞ୍ଚିଯାଏ ଏବଂ ସେ କୌଣସି ସନ୍ଥଙ୍କ ସହିତ ଭେଟ କରାଇ ଦିଅନ୍ତି—

**ହୃଦୟର ସହ ପ୍ରାର୍ଥନା ଯେଉଁ ପ୍ରକୃତ ଭକତ ଗାଏ ।**
**ଭକ୍ତବତ୍ସଳଙ୍କ କାନରେ ତାହା ଅଚିରେ ପହଞ୍ଚି ଯାଏ ॥**



# ୧୧. ସତ୍ସଙ୍ଗର ପ୍ରଭାବ

ଗୋଟିଏ ସ୍ଥାନରେ ଦଳେ ଡାକୁ ଥିଲେ । ସେମାନଙ୍କ ମଧ୍ୟରେ ଜଣେ ବୁଢ଼ା ଡାକୁ ଥିଲା । ସେ ସମସ୍ତଙ୍କୁ କହୁଥିଲା, "ଦେଖ ଭାଇ! ଯେଉଁଠି ପ୍ରବଚନ ଓ ସତ୍ସଙ୍ଗ ହେଉଥିବ, ସେଠାକୁ ଭୁଲ୍‌ରେ ବି ଯିବନି, ନ ହେଲେ ତୁମର ସବୁ ଧନ୍ଦା ବନ୍ଦ ହୋଇଯିବ । କେଉଁଠିକି ଯିବାବେଳେ ମଝିରେ ଯଦି ସତ୍ସଙ୍ଗ ହେଉଥିବାର ଜଣାପଡ଼େ, ତେବେ କାନରେ ହାତ ଦେଇଦେବ, ସେ କଥା ଶୁଣିବ ନାହିଁ ।" ଡାକୁମାନେ ଏପରି ଶିକ୍ଷା ପାଇଥିଲେ । ଦିନେ ଜଣେ ଡାକୁକୁ କୌଣସି ସ୍ଥାନକୁ ଯିବାକୁ ପଡ଼ିଲା । ବାଟରେ କୌଣସି ସ୍ଥାନରେ ସତ୍ସଙ୍ଗ ଓ ପ୍ରବଚନ ଚାଲିଥାଏ । ଗୋଟିଏ ବାଟ; ଅନ୍ୟ ବାଟ ନାହିଁ । ସେହି ବାଟରେ ହିଁ ଯିବାକୁ ହେବ । ଡାକୁ ଜଣକ ସେହି ବାଟରେ ଗଲାବେଳକୁ ହାତରେ କାନ ବନ୍ଦ କରିଦେଲା । ଯାଉ ଯାଉ ଅଗ୍ରନକ ତା'ଗୋଡ଼ରେ ଗୋଟେ କଣ୍ଟା ଫୁଟିଗଲା । ସେ ଗୋଟିଏ ହାତରେ କାନ ବନ୍ଦ କରି ଅନ୍ୟ ହାତରେ କଣ୍ଟା କାଢ଼ିଲା ଓ ପୁଣି କାନ ବନ୍ଦ କରି ସେଠାରୁ ଚାଲିଗଲା । କଣ୍ଟା କାଢ଼ିବାବେଳେ ତାକୁ ଶୁଭିଲା ଯେ 'ଦେବତାମାନଙ୍କର ଛାଇ ନ ଥାଏ' ।

ଦିନେ ସେହି ଡାକୁମାନେ ରାଜାଙ୍କ ଘରେ ଡକାୟତି କଲେ । ରାଜାଙ୍କ ଗୁପ୍ତଚରମାନେ ଡକାୟତଙ୍କୁ ଖୋଜିବାକୁ ଲାଗିଲେ । ଜଣେ ଗୁପ୍ତଚର ମନରେ ସେହି ଡାକୁମାନଙ୍କ ପ୍ରତି ସନ୍ଦେହ ହେଲା । ଡାକୁମାନେ ଦେବୀଙ୍କୁ ପୂଜା କରୁଥିଲେ । ସେହି ଗୁପ୍ତଚର ଜଣକ ଦେବୀ ରୂପ ଧରି ମନ୍ଦିରରେ ଦେବୀଙ୍କ ମୂର୍ତ୍ତି ପାଖରେ ଠିଆ ହୋଇଗଲା । ଡାକୁମାନେ ସେଠାକୁ ଆସିବାରୁ ସେ ରାଗିଯାଇ ସେମାନଙ୍କୁ କହିଲା—"ତୁମ୍ଭେମାନେ ଏତେ ଧନ ଆଣିଲ, ହେଲେ ମୋତେ ପୂଜା କଲ ନାହିଁ । ମୁଁ ସମସ୍ତଙ୍କୁ ଖାଇଯିବି ।" ଏହା ଶୁଣି ଡାକୁମାନେ ଡରିଗଲେ ଏବଂ କହିଲେ—"ମାଆ! ଆମର ଭୁଲ୍

ହୋଇଯାଇଛି, କ୍ଷମା କରିଦିଅ। ଆମେ ଅବଶ୍ୟ ପୂଜା କରିବୁ।" ତା'ପରେ ସେମାନେ ଧୂପ, ଦୀପ ଦେଇ ଦେବୀଙ୍କୁ ପୂଜା କଲେ ଓ ଆଳତି କଲେ। ସେମାନଙ୍କ ମଧ୍ୟରୁ ଯେଉଁ ଡାକୁ ସତ୍ସଙ୍ଗରେ ଶୁଣିଥିଲା ଯେ, ଦେବତାମାନଙ୍କର ଛାଇ ନ ଥାଏ, ସେ କହିଲା—ଇଏ ଦେବୀ ନୁହଁ। ଦେବୀର ଛାଇ ନ ଥାଏ, ଏହାର ତ ଛାଇ ପଡୁଛି! ଏହା ଶୁଣିବାମାତ୍ରେ ଡାକୁମାନେ ଦେବୀରୂପ ଧାରଣ କରିଥିବା ଗୁପ୍ତଚରକୁ ଧରି ମାରିବାକୁ ଲାଗିଲେ। ସେମାନେ କହିଲେ—ଚୋର ତୁ, ଆଉ ଆମ୍ଭମାନଙ୍କ ନାଆଁରେ ଲଗାଉଛୁ। ଆମ୍ଭେମାନେ ଚୋରି କରି ନାହୁଁ। ଗୁପ୍ତଚର ଜଣକ ସେଠାରୁ ପଳାଇଗଲା। ସତ୍ସଙ୍ଗର ଗୋଟିଏ କଥା ଶୁଣିବାରୁ କେତେ ପ୍ରଭାବ ପଡ଼ିଲା!



# ୧୨. ଚୁଗୁଲିରୁ କ୍ଷତି

ଚୁଗୁଲି କରିବା, ଗୁଜବ ପ୍ରଚାର କରିବା, ଦ୍ୱେଷ ଜାତ କରାଇବା, କଳି ଲଗାଇବା ପ୍ରଭୃତି ମହାପାପ ଓ ଜଘନ୍ୟ ହତ୍ୟା । ଜଣେ ଲୋକ କୌଣସି ମୁସଲ୍‌ମାନ ପାଖକୁ ଚାକିରି ପାଇଁ ଗଲା । ସେ ତା'ଘରେ ଚାକିରି କରିବା ପୂର୍ବରୁ କହିଦେଲା—"ମୋର ଟିକେ କଥା ଏପଟ ସେପଟ କରିବାର ଅଭ୍ୟାସ ଅଛି, ତେଣୁ ମୁଁ ଆଗରୁ କହି ଦେଉଛି!" ମିଆଁ ଭାବିଲେ—କିଛି କଥା ନାହିଁ, ***'ମିଆଁ ବୀବୀ ରାଜୀ ତ କ୍ୟା କରେଗା କାଜୀ'*** । ତାକୁ ଚାକିରିରେ ରଖିଲେ । ଦିନେ ସେ ହଠାତ୍ କାନ୍ଦିବା ଆରମ୍ଭ କଲା । ବିବି ପଚାରିଲେ—ହଇରେ, କାନ୍ଦୁଛୁ କାହିଁକି? ସେ କହିଲା—"ମୁଁ ଆପଣଙ୍କ ଘରେ ରହୁଛି, ଦରମା ପାଉଛି, ଏଥିରୁ ମୋ ପିଲାଛୁଆଙ୍କ କାମ ଚଳୁଛି । ଆପଣଙ୍କ ହିତ କଥା କହିବାକୁ ମନ ହେଉଛି; କିନ୍ତୁ କ'ଣ କରିବି, ଆପଣଙ୍କୁ ଭଲ ଲାଗିବ, ନ ଲାଗିବ! ସେଥିପାଇଁ ଦୁଃଖ ହେଉଛି ।" ବିବି କହିଲେ—ତୋ'ମନରେ କ'ଣ ଦୁଃଖ କହିଦେ? ସେ କହିଲା—ମିଆଁ ସାହେବ ତ ଦ୍ୱିତୀୟ ବିବାହ କରିବା ପାଇଁ ଚାହୁଁଛନ୍ତି, ଏବେ ଆପଣଙ୍କ ଉପରକୁ ତ ବିପଦ ମାଡ଼ି ଆସିବ! ବିବି ପଚାରିଲେ—"ତେବେ କ'ଣ କରାଯିବ? ଏଥିପାଇଁ କିଛି ଉପାୟ ଅଛି କି?" ସେ କହିଲା—"ହଁ, ଉପାୟ ଅଛି । ଆପଣ ମିଆଁଙ୍କର ଦାଢ଼ିରୁ କିଛିଟା ବାଳ କାଟି ଆଣିଲେ ମୁଁ ସେଥିରେ ଗୋଟିଏ ତେଉଁରିଆ ତିଆରି କରିଦେବି, ତେଣିକି ସବୁ ଠିକ୍ ହୋଇଯିବ ।" ସେପଟେ ମିଆଁ ସାହେବଙ୍କୁ ଯାଇ କହିଦେଲା—"ବିବି ଆପଣଙ୍କ ସହିତ ଶତ୍ରୁତା ରଖୁଛନ୍ତି, କେତେବେଳେ ଯେ ମାରିଦେବେ, କିଛି ଠିକଣା ନାହିଁ! ମୋ ଆଗରେ କହୁଥିଲେ, ତେଣୁ ଲକ୍ଷ୍ୟ ରଖୁଥିବେ । ଏଥର ମିଆଁ ମଧ୍ୟ ନିଜ ଜୀବନ ବିଷୟରେ ସଜାଗ ରହିଲେ । ଦିନେ ମିଆଁ ସତ ଘଟଣା ଜାଣିବା ପାଇଁ ମିଛୁଟାରେ ଶୋଇ ଥାଆନ୍ତି । ବିବି ତାଙ୍କ ଦାଢ଼ିରୁ ବାଳ କାଟିବା ପାଇଁ ଛୁରୀ ଧରି ଆସିଲେ । ତାକୁ ଦେଖି ମିଆଁ ଭାବିଲେ—"ଇଏ ବୋଧେ ମୋର ବେକ କାଟିବାକୁ ଆସିଛି ।"ସେହିଠାରୁ ସେ ଦୁହିଙ୍କ ଭିତରେ କଳି ଆରମ୍ଭ ହୋଇଗଲା । ତେଣୁ କଥାରେ ଅଛି—

**ଚୁଗୁଲିଆ ସଙ୍ଗେ କଥା ନ କହିବ ତା'ପାଖେ ନ ହେବ ଠିଆ ।**
**କୁଟୁମ୍ବ ହୋଇଲା ସର୍ବନାଶ ଏବେ ମଲେ ବିବି ଆଉ ମିଆଁ ॥**



# ୧୩. ଦୃଢ଼ ଉଦ୍ଦେଶ୍ୟରୁ ଲାଭ

ଜଣେ ଭକ୍ତ ତେନ୍ତୁଳି ଗଛ ମୂଳରେ ବସି ଭଗବାନଙ୍କ ଭଜନ କରୁଥିଲେ। ଦିନେ ନାରଦ ଆସି ସେଠାରେ ପହଞ୍ଚିଲେ। ସେହି ଭକ୍ତ ଜଣକ ନାରଦଙ୍କୁ କହିଲେ—ବାବା! ଆପଣ ତ ଭଗବାନଙ୍କ ପାଖକୁ ଯାଉଛନ୍ତି, ଦୟାକରି ଟିକେ ତାଙ୍କୁ ପଗ୍ଚରିବେ, ସେ ମୋତେ କେବେ ଦର୍ଶନ ଦେବେ? ନାରଦ ଭଗବାନଙ୍କ ନିକଟକୁ ଯାଇ ପଗ୍ଚରିଲେ— ଅମୁକ ଜାଗାରେ ତେନ୍ତୁଳି ଗଛ ମୂଳରେ ବସି ଜଣେ ଭକ୍ତ ଭଜନ କରୁଛି, ସେ ପଗ୍ଚରୁଥିଲା, ଆପଣ କେବେ ତାକୁ ଦର୍ଶନ ଦେବେ? ଭଗବାନ କହିଲେ—ସେହି ଗଛରେ ଯେତିକିଟି ପତ୍ର ଅଛି, ତା'ର ସେତିକି ଜନ୍ମ ପରେ ମୁଁ ଦର୍ଶନ ଦେବି। ଏହା ଶୁଣି ନାରଦଙ୍କ ମୁହଁ ଶୁଖିଗଲା। ସେ ସେହି ଭକ୍ତଙ୍କ ନିକଟକୁ ଗଲେ, ହେଲେ ତାଙ୍କୁ କିଛି କହିଲେ ନାହିଁ। ଭକ୍ତ ଅନୁରୋଧ କଲେ—ଭଗବାନ କ'ଣ କହିଲେ, ଆପଣ ଦୟା କରି କହନ୍ତୁ। ନାରଦ କହିଲେ, ତୁମେ ଶୁଣିଲେ ହତାଶ ହୋଇଯିବ। ଭକ୍ତ ଜଣକ ବହୁତ ବାଧ୍ୟ କରିବାରୁ ନାରଦ କହିଲେ, ଏହି ଗଛରେ ଯେତିକିଟି ପତ୍ର ଅଛି, ସେତିକି ଜନ୍ମ ପରେ ଭଗବାନ ଦର୍ଶନ ଦେବେ। ଭକ୍ତ ଉତ୍ସୁକ ହୋଇ ପଗ୍ଚରିଲେ, ଏ କଥା କ'ଣ ଭଗବାନ ନିଜେ କହିଛନ୍ତି? ନାରଦ କହିଲେ—ହଁ, ଭଗବାନ ନିଜେ କହିଛନ୍ତି। ଏହା ଶୁଣି ସେହି ଭକ୍ତଙ୍କ ଆନନ୍ଦର ଠିକଣା ରହିଲା ନାହିଁ। 'ମୋତେ ଭଗବାନ ଦର୍ଶନ ଦେବେ, ଦର୍ଶନ ଦେବେ, ଦର୍ଶନ ଦେବେ!!' ଏପରି କହି କହି ସେ ଆନନ୍ଦରେ ନାଚିବାକୁ ଲାଗିଲେ। କାରଣ ଭଗବାନଙ୍କ ବଚନ କେବେ ଅସତ୍ୟ ହେବ ନାହିଁ। ଇତ୍ୟବସରରେ ଭଗବାନ ସେଠାରେ ଆବିର୍ଭୂତ ହୋଇଗଲେ। ନାରଦ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ। ସେ ଭଗବାନଙ୍କୁ କହିଲେ—"ପ୍ରଭୁ! ଯଦି ଏମିତି କରିବାର ଥିଲା, ତେବେ ମୋତେ ଅପମାନିତ କରାଇଲେ କାହିଁକି? ଆପଣ ଯଦି ଏତେ ଶୀଘ୍ର ଆସିବାକୁ ଗ୍ଚହୁଁଥିଲେ, ଆସିଯାଇ ଥାଆନ୍ତେ। ମୋତେ କହିଲେ ଯେ ଏତେ ଜନ୍ମ ପରେ ଦର୍ଶନ ଦେବି, ପୁଣି ସଙ୍ଗେ ସଙ୍ଗେ ହାଜର!" ଭଗବାନ କହିଲେ—"ନାରଦ! ତୁମେ ଯେଉଁ ସମୟରେ

ମୋତେ ପଗ୍ୱରିଥିଲ, ସେହି ସମୟର ସାଧନା ଅନୁସାରେ ମୁଁ ଏତିକି ଜନ୍ମ ପରେ ଦର୍ଶନ ଦେବି ବୋଲି କହିଥିଲି । କିନ୍ତୁ ବର୍ତ୍ତମାନ ତ ଏହାର ସାଧନାରେ ବହୁତ ପରିବର୍ତ୍ତନ ହେଲା, ପୂର୍ବ ଅପେକ୍ଷା ଖୁବ୍ ତୀବ୍ର ହୋଇଗଲା! ଏ ତ 'ଭଗବାନ ଦର୍ଶନ ଦେବେ' ବୋଲି ଶୁଣିବାମାତ୍ରେ ଆନନ୍ଦରେ ନାଚିବାକୁ ଲାଗିଲା! ତେଣୁ ମୋତେ ସଙ୍ଗେ ସଙ୍ଗେ ଆସିବାକୁ ପଡିଲା । ଉଦ୍ଦେଶ୍ୟର ସଫଳତା ପାଇଁ ଯେଉଁ ଅଟଳ ବିଶ୍ୱାସ, ଅନନ୍ୟତା, ଦୃଢ଼ତା ଓ ଉତ୍ସାହ ହୁଏ, ତାହାଦ୍ୱାରା ଭଜନ ତୀବ୍ରତର ହୁଏ ।

ଜଣେ ସନ୍ଥ ଥିଲେ । ଦିନେ ସେ କୌଣସି ଗୃଷୀ ଘରକୁ ଗଲେ । ଗୃଷୀ ତାଙ୍କର ଖୁବ୍ ସେବା କଲା । ସନ୍ଥ ତାକୁ କହିଲେ, ପ୍ରତିଦିନ କିଛି ନାମଜପ କରିବା ପାଇଁ ତୁ ନିୟମ ଗ୍ରହଣ କର । ସେ କହିଲା—ବାବା, ମୋତେ ବେଳ ମିଳୁନି । ସନ୍ଥ କହିଲେ—ଠିକ୍ ଅଛି, ପ୍ରତିଦିନ ମନ୍ଦିରରେ ଠାକୁରଙ୍କୁ ଦର୍ଶନ କରି ଆସିବୁ । ସେ କହିଲା—ମୁଁ ବିଲରେ ରହୁଛି, ଠାକୁର ତ ଗାଁଆ ମନ୍ଦିରରେ ଅଛନ୍ତି, ମୁଁ ପୁଣି କେମିତି ଦର୍ଶନ କରିବି? ସନ୍ଥଜଣକ ତାକୁ କୌଣସି ଗୋଟାଏ ନିୟମ ପାଳନ କରିବା ପାଇଁ ବିଭିନ୍ନ ପ୍ରକାରେ କହିଲେ, କିନ୍ତୁ ସେ କହୁଥାଏ—ମୋ ଦ୍ୱାରା ଏସବୁ ହେବ ନାହିଁ । ମୁଁ ବିଲରେ କାମ କରିବି, କି ମାଳା ଜପ କରିବି! ଏତେ ବେଳ ମୋ ପାଖରେ କାଇଁ? ପିଲାଛୁଆଙ୍କ ପାଳନପୋଷଣର ଦାୟିତ୍ୱ ଅଛି; ତୁମ ଭଳି ମୁଁ କ'ଣ ବାବାଜୀ ହୋଇଛି ଯେ, ବସି ରହି ଭଜନ କରିବି । ସନ୍ଥ କହିଲେ—ହଉ, ତୁ ନିଜେ କହିଲୁ ତୁ କ'ଣ କରି ପାରିବୁ? ଗୃଷୀ କହିଲା—"ଜଣେ କୁମ୍ଭାର ମୋର ପଡ଼ୋଶୀ, ସେ ମୋର ମିତ୍ର; ଆମ ଦୁହିଙ୍କ ବିଲ ମଧ୍ୟ ପାଖକୁ ପାଖ ଲାଗିଛି ଏବଂ ଘର ମଧ୍ୟ ପାଖକୁ ପାଖ ଲାଗିଛି । ନିୟମ ପାଳନ କରି ପ୍ରତିଦିନ ଯାଇ ତାକୁ ଥରେ ଦେଖି ପାରିବି ।" ସନ୍ଥ କହିଲେ—ଠିକ୍ ଅଛି, ତାକୁ ନ ଦେଖି କେବେ ଭୋଜନ କରିବୁ ନାହିଁ । ଗୃଷୀ ଲୋକଟି ଏହା ସ୍ୱୀକାର କଲା । ତା' ସ୍ତ୍ରୀ ରୋଷେଇ କରି ସାରି ଖାଇବାକୁ ଡାକିଲେ ସେ ପାଚେରୀ ଉପରେ ଚଢ଼ି କୁମ୍ଭାରକୁ ଦେଖିନିଏ ଓ ଖାଇବା ପାଇଁ ଯାଏ । ଏହି ନିୟମଟିକୁ ସେ ଦୃଢ଼ଭାବରେ ପାଳନ କଲା ।

ଦିନେ ଗୃଷୀକୁ ଶୀଘ୍ର ବିଲକୁ ଯିବାର ଥିଲା, ତେଣୁ ଭୋଜନ ଶୀଘ୍ର

ପ୍ରସ୍ତୁତ ହୋଇଗଲା । ପାଚେରୀ ଉପରେ ଚଢ଼ି ଦେଖିଲା ବେଳକୁ କୁମ୍ଭାର ନାହିଁ । ପଚ୍ଛରି ବୁଝିବାରୁ ଜଣା ପଡ଼ିଲା ଯେ ସେ କୁଆଡ଼େ ମାଟି ହାଣିବାକୁ ଯାଇଛି । ଚ୍ଷୀ କହିଲା—କୁଆଡ଼େ ମରିଗଲା ମ, ଟିକେ ଦେଖି ନେଇ ଆଆନ୍ତି ଭଲା । ଚ୍ଷୀ ତାକୁ ଦେଖିବା ପାଇଁ ଖୁବ୍ ଜୋର୍‌ରେ ଦୌଡ଼ିଲା । ଏପଟେ ମାଟି ଖୋଳୁ ଖୋଳୁ କୁମ୍ଭାରକୁ ଧନରତ୍ନପୂର୍ଣ୍ଣ ଗୋଟିଏ ହାଣ୍ଡି ମିଳିଗଲା । ସେ ଭାବିଲା ଯେ କେହି ଦେଖିନେଲେ ବଡ଼ ଅସୁବିଧା ହେବ! ସେଥିପାଇଁ ସେ ଆଖପାଖରେ କେହି ଅଛନ୍ତି କି ବୋଲି ଦେଖିବାକୁ ଗୋଟିଏ ଗଛ ଉପରକୁ ଚଢ଼ିଗଲା । ହଠାତ୍ ସେ ଚ୍ଷୀକୁ ଦେଖିବାକୁ ପାଇଲା । ଏପଟେ ଚ୍ଷୀର ଦୃଷ୍ଟି ମଧ୍ୟ କୁମ୍ଭାର ଉପରେ ପଡ଼ିଲା । କୁମ୍ଭାରକୁ ଦେଖିବାମାତ୍ରେ ଚ୍ଷୀଜଣକ ଓଲଟା ଘରକୁ ଫେରିଯିବା ପାଇଁ ଦୌଡ଼ିଲା । କୁମ୍ଭାର ଭାବିଲା ଯେ ବୋଧହୁଏ ଇଏ ହାଣ୍ଡି ଦେଖିଦେଲା, ଏବେ ଅସୁବିଧା ହୋଇଯିବ । କୁମ୍ଭାର ଡାକ ପକାଇଲା—ଆରେ, ରହ ରହ! ଚ୍ଷୀ କହିଲା—ବାସ୍, ଦେଖିଦେଲି, ଦେଖିଦେଲି! କୁମ୍ଭାର କହିଲା—ହଉ, ଦେଖିଦେଲୁ ଯଦି ଅଧା ତୋର ଓ ଅଧା ମୋର, କିନ୍ତୁ କାହାକୁ କହିବୁନି! ଏହା ଶୁଣି ଚ୍ଷୀ ତା'ପାଖକୁ ଆସିବାରୁ ତାକୁ ଧନ ମିଳିଲା । ସେ ଭାବିଲା, ସନ୍ଥ କହିବାରୁ ନିଜ ଇଚ୍ଛାରେ ନିୟମ ରଖି କାମ କରିବାରେ ତ ଏତେ ଲାଭ ମିଳିଲା, ଯଦି ସର୍ବଦା ତାଙ୍କର ଆଜ୍ଞା ପାଳନ କରାଯାଏ, ତେବେ କେତେ ଲାଭ ନ ହେବ! ଏପରି ବିଚ୍ରର କରି ସେହି ଚ୍ଷୀ ଓ ତା' ମିତ୍ର କୁମ୍ଭାର ଉଭୟେ ଭଗବାନଙ୍କର ଭକ୍ତ ହୋଇଗଲେ ।

ତାତ୍ପର୍ଯ୍ୟ ହେଲା, ଆମେ ଦୃଢ଼ଭାବରେ ନିଜର ଉଦ୍ଦେଶ୍ୟ ସ୍ଥିର କରିଦେବା ଉଚିତ ଯେ, ଯାହା ହେଉ ପଛେ, ମୋତେ ଭଗବଦ୍ ଅଭିମୁଖୀ ହେବାକୁ ପଡ଼ିବ, ମୋତେ ଭଗବାନଙ୍କର ଭଜନ କରିବାକୁ ହେବ । ଉଦ୍ଦେଶ୍ୟ ନିର୍ଣ୍ଣୟ କରିବା ଅପେକ୍ଷା ଉଦ୍ଦେଶ୍ୟକୁ ଚିହ୍ନିଯିବା ଭଲ । କାରଣ ଉଦ୍ଦେଶ୍ୟ ପୂର୍ବରୁ ସ୍ଥିର ହୋଇ ସାରିଛି, ପରେ ମନୁଷ୍ୟ ଜନ୍ମ ମିଳିଛି । 'ମନୁଷ୍ୟଜନ୍ମ କେବଳ ଭଗବତ୍‌ପ୍ରାପ୍ତି ନିମନ୍ତେ ମିଳିଛି'—ଏହି ଉଦ୍ଦେଶ୍ୟ ସହିତ ପରିଚିତ ହୋଇଗଲେ ଓ ଏହାକୁ ନିଃସନ୍ଦେହରେ ସ୍ୱୀକାର କଲେ, ଭଜନ ଆପେ ଆପେ ହେବ ।



# ୧୪. 'ରାମ କାଜ କରିବେ କୋ ଆତୁର'

ଥରେ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ତିନି ଭାଇ ମାତା ସୀତାଙ୍କ ସହିତ ଭେଟ ହୋଇ ବିଚ୍ାର କଲେ ଯେ—ହନୁମାନ ଆମ୍ଭମାନଙ୍କୁ ପ୍ରଭୁ ରାମଚନ୍ଦ୍ରଙ୍କ ସେବା କରିବାକୁ ସୁଯୋଗ ଦେଉ ନାହାନ୍ତି, ଏକୁଟିଆ ସବୁ ସେବା କରୁଛନ୍ତି, ତେଣୁ ଏଥର ପ୍ରଭୁଙ୍କର ସମସ୍ତ ସେବାକାର୍ଯ୍ୟ ଆମେ କରିବା, ହନୁମାନଙ୍କୁ କୌଣସି କାମ କରିବାକୁ ଦେବା ନାହିଁ। ଏପରି ବିଚ୍ାର କରି ସେମାନେ ପରସ୍ପର ମଧ୍ୟରେ ସମସ୍ତ ସେବାକାର୍ଯ୍ୟ ବାଣ୍ଟି ଦେଲେ। ହନୁମାନ ଯେତେବେଳେ ସେବା କରିବା ପାଇଁ ଆସିଲେ, ସେମାନେ ତାଙ୍କୁ ଅଟକାଇ ଦେଲେ ଓ କହିଲେ—ଆଜି ପ୍ରଭୁଙ୍କର ସେବାକାର୍ଯ୍ୟ ବଣ୍ଟା ହୋଇ ସାରିଛି, ତୁମ ପାଇଁ କୌଣସି ସେବାକାର୍ଯ୍ୟ ନାହିଁ। ହନୁମାନ ଦେଖିଲେ ଯେ ପ୍ରଭୁ ହାଇ ମାରିବା ସମୟରେ ଫୁଟୁକି ମାରିବା ଦାୟିତ୍ୱ ତ କେହି ନେଇ ନାହାନ୍ତି। ତେଣୁ ସେହି ସେବାଟିକୁ ସେ ନିଜେ ଗ୍ରହଣ କଲେ। ଏଥିପ୍ରତି କାହାରି ଲକ୍ଷ୍ୟ ନ ଥିଲା! ପ୍ରଭୁଙ୍କ ସେବା ପାଇଁ ହନୁମାନଙ୍କର ନିଷ୍ଠା ଥିଲା। ଯାହାର ନିଷ୍ଠା ଥାଏ, ତାକୁ କିଛି ହେଲେ ବି ସେବାକାର୍ଯ୍ୟ ମିଳିଯାଏ। ଏଥର ହନୁମାନ ଦିନସାରା ଭଗବାନଙ୍କ ଆଗରେ ବସି ରହିଲେ ଓ ତାଙ୍କ ମୁହଁକୁ ଚ୍ାହିଁ ରହିଲେ; କାରଣ କେତେବେଳେ ଯେ ପ୍ରଭୁଙ୍କୁ ହାଇ ମାଡ଼ିବ, ତାହାର କୌଣସି ଠିକଣା ନାହିଁ! ରାତିରେ ମଧ୍ୟ ହନୁମାନ ସେହିପରି ବସି ଥାଆନ୍ତି। ଭରତ ପ୍ରଭୃତି ଭାଇମାନେ ହନୁମାନଙ୍କୁ କହିଲେ, "ରାତିରେ ତୁମେ ଏଠାରେ ରହି ପାରିବନି, ଏବେ ଏଠାରୁ ତୁମକୁ ଯିବାକୁ ପଡ଼ିବ।" ହନୁମାନ କହିଲେ—"କେମିତି ଯିବି? ରାତିରେ ଭଗବାନଙ୍କୁ କେବେ ଯେ ହାଇ ମାଡ଼ିବ, କିଏ କହିବ?" ବହୁତ ବାଧ୍ୟ କରିବାରୁ ହନୁମାନ ସେଠାରୁ ଚ୍ାଲିଗଲେ ଓ ଛାତ ଉପରେ ବସି ରହିଲେ। ସେଠାରେ ବସି ଅବିରତ ଭାବରେ ସେ

ଫୁଟୁକି ମାରିବା ଆରମ୍ଭ କରିଦେଲେ; କାରଣ ପ୍ରଭୁଙ୍କର କେତେବେଳେ ହାଇ ଆସିବ ଜଣା ନାହିଁ! ଏଣେ ପ୍ରଭୁ ରାମଚନ୍ଦ୍ରଙ୍କର ଏମିତି ହାଇ ଆସିଲା ଯେ ତାଙ୍କ ପାଟି ଖୋଲା ରହିଗଲା, ଆଉ ବନ୍ଦ ହେଲା ନାହିଁ! ଏହା ଦେଖି ପ୍ରଭୁଙ୍କର କ'ଣ ହୋଇଗଲା ଭାବି ସୀତା ବ୍ୟସ୍ତ ହୋଇ ପଡ଼ିଲେ! ଭରତ ପ୍ରଭୃତି ଭାଇମାନେ ଆସି ରୁଣ୍ଡ ହୋଇଗଲେ। ବୈଦ୍ୟଙ୍କୁ ଡକାଗଲା, ହେଲେ ସେ କିଛି କରି ପାରିଲେ ନାହିଁ। ଗୁରୁ ବସିଷ୍ଠ ଆସିଲେ ଏବଂ ଦେଖି ଚକିତ ହେଲେ ଯେ ଏପରି ବିଷମ ପରିସ୍ଥିତିରେ ହନୁମାନ ଦେଖାଯାଉ ନାହାନ୍ତି! ଅନ୍ୟ ସମସ୍ତେ ତ ଏଠାରେ ଅଛନ୍ତି, କିନ୍ତୁ ହନୁମାନ ଗଲେ କୁଆଡ଼େ? ଖୋଜା ଖୋଜି କରିବାରୁ ଜଣାଗଲା ଯେ, ହନୁମାନ ଛାତ ଉପରେ ବସି ଫୁଟୁକି ମାରୁଛନ୍ତି। ତାଙ୍କୁ ଡକାଗଲା ଏବଂ ସେ ପ୍ରଭୁଙ୍କ ପାଖକୁ ଆସି ଫୁଟୁକି ମାରିବା ବନ୍ଦ କରିବାରୁ ପ୍ରଭୁ ରାମଚନ୍ଦ୍ର ସ୍ୱାଭାବିକ ସ୍ଥିତି ପ୍ରାପ୍ତ ହେଲେ, ତାଙ୍କ ପାଟି ବନ୍ଦ ହେଲା! ଏବେ ସମସ୍ତେ ବୁଝି ପାରିଲେ ଯେ, ହନୁମାନ ଫୁଟୁକି ମାରିବାରୁ ଏ ସମସ୍ତ କାଣ୍ଡ ହେଲା! ଭଗବାନ ଏପରି ଲୀଳା କରି ଏହା ଜଣାଇବାକୁ ଚାହୁଁଥିଲେ ଯେ, କ୍ଷୁଧାର୍ତ୍ତଙ୍କୁ ଯେପରି ଅନ୍ନ ଦେବା ଉଚିତ, ସେହିପରି ସେବା ପାଇଁ ଆତୁର ରହୁଥିବା ହନୁମାନଙ୍କୁ ସେବା କରିବାର ସୁଯୋଗ ଦେବା ଉଚିତ, ତାହା ବନ୍ଦ କରିବା ଉଚିତ ନୁହେଁ। ତା'ପରେ ଭରତ ପ୍ରଭୃତି ଭାଇମାନେ ଆଉ ଏପରି ଜିଦି କରି ନ ଥିଲେ।



## ୧୫. ତିନି ଦିନିଆ ରାଜ୍ୟ

ଜଣେ ରାଜକୁମାର ଥିଲେ । ସେ ବିଦ୍ୟାଳୟକୁ ପଢ଼ିବା ପାଇଁ ଯାଆନ୍ତି । ପ୍ରଜାମାନଙ୍କର ପିଲାମାନେ ମଧ୍ୟ ପଢ଼ିବା ପାଇଁ ସେହି ବିଦ୍ୟାଳୟକୁ ଯାଆନ୍ତି । ସେମାନଙ୍କ ମଧ୍ୟରୁ ପାଞ୍ଚ ସାତ ଜଣ ପିଲାଙ୍କ ସହିତ ରାଜକୁମାରଙ୍କର ମିତ୍ରତା ହୋଇଗଲା । ମିତ୍ରମାନେ କହିଲେ—"ତୁମେ ରାଜକୁମାର, ରାଜସିଂହାସନର ଅଧିକାରୀ । ଆଜି ସିନା ତୁମେ ସ୍ନେହ ଓ ପ୍ରେମ କରୁଛ, କିନ୍ତୁ ରାଜା ହେବା ପରେ ତୁମେ ଯଦି ଏପରି ପ୍ରେମ ରଖିବ, ତେବେ ଆମେ ଜାଣିବୁ ଯେ, ଏହା ପ୍ରକୃତ ମିତ୍ରତା, ନ ହେଲେ କି ମିତ୍ରତା?"

ସମୟ ଗଡ଼ି ଚାଲିଲା । ସମସ୍ତେ ବଡ଼ ହୋଇଗଲେ । ରାଜକୁମାର ରାଜସିଂହାସନରେ ବସିଲେ । ବର୍ଷେ ଦୁଇ ବର୍ଷ ମଧ୍ୟରେ ଭଲରେ ରାଜକାର୍ଯ୍ୟ ଚାଲିଲା । ରାଜକୁମାର ପିଲାଦିନର ସେହି ମିତ୍ରଙ୍କ ମଧ୍ୟରୁ ଜଣକୁ ଡାକି କହିଲେ—"ତୁମର ମନେ ଅଛି କି ନାହିଁ, ତୁମେମାନେ ମୋତେ କହିଥିଲ ଯେ, ରାଜା ହେବାପରେ ଏପରି ମିତ୍ରତା ରଖିଲେ ଆମେ ଜାଣିବୁ ଯେ ପ୍ରକୃତ ମିତ୍ର । ଏବେ ମୁଁ ତୁମକୁ ତିନି ଦିନ ପାଇଁ ରାଜ୍ୟ ଦେଉଛି । ତୁମେ ରାଜସିଂହାସନରେ ବସି ରାଜ୍ୟ ଶାସନ କର ।" ମିତ୍ର ଜଣକ କହିଲା— "ଅନ୍ନଦାତା! ତାହା ଥିଲା ପିଲାବେଳର କଥା । ମୁଁ ରାଜ୍ୟ ଚାହେଁ ନାହିଁ ।" ବେଶୀ ବାଧ୍ୟ କରିବାରୁ ସେହି ମିତ୍ର ଜଣକ ତିନି ଦିନ ପାଇଁ ରାଜ୍ୟ ଭାର ଗ୍ରହଣ କଲା ।

ସେହି ମିତ୍ର ଜଣକ ରାଜଗାଦିରେ ବସିଲା ଓ ସେହି ଦିନ ଖିଆପିଆ କରିବାରେ ଓ ମଉଜ-ମଜଲିସ୍ କରିବାରେ ମାତିଗଲା । ତା' ପରଦିନ ବିଳାସବ୍ୟସନରେ ମାତି ରହିଲା । ରାତି ହେବାରୁ ସେ କହିଲା—"ମୁଁ ରାଣୀଉଆସକୁ ଯିବି ।" ସମସ୍ତେ ଅସୁବିଧାରେ ପଡ଼ିଗଲେ । ରାଣୀ ଥିଲେ ପତିବ୍ରତା । ସେହି ମିତ୍ର ଜଣକ ଜିଦ୍ ଧରି ବସିଲା ଯେ, ସବୁକିଛି ମୋର, ମୁଁ ହେଉଛି ରାଜା; ତେଣୁ ରାଣୀ ମଧ୍ୟ ମୋର । ରାଣୀ କ'ଣ କରିବେ ବୋଲି ତାଙ୍କ କୁଳଗୁରୁ ବ୍ରାହ୍ମଣଙ୍କୁ ପଚାରିଲେ । ଗୁରୁଦେବ କହିଲେ— "ମାଆ! ତୁମେ ବ୍ୟସ୍ତ ହୁଅନି, ମୁଁ ସବୁ ଠିକ୍ କରିଦେବି ।" ତିନି ଦିନ ପାଇଁ ରାଜା ହୋଇଥିବା ସେହି ମିତ୍ରକୁ ଗୁରୁଦେବ ପଚାରିଲେ—ଯଦି ଆପଣ ରାଣୀଉଆସକୁ ଯିବାକୁ ଚାହାନ୍ତି, ତେବେ ଆପଣଙ୍କୁ ରାଜାଙ୍କ ଭଳି ଯିବାକୁ

ହେବ । ସେଥିପାଇଁ ଭଲଭାବରେ ବେଶଭୂଷା ହେବାକୁ ପଡ଼ିବ । ସେ ଭୃତ୍ୟମାନଙ୍କୁ ଡାକି ମହାରାଜା ମହଲକୁ ଯିବା ପାଇଁ ସବୁ ପ୍ରସ୍ତୁତ କର ବୋଲି କହିଲେ । ତା'ପରେ ବାରିକକୁ ଡାକି ମହାରାଜଙ୍କୁ ଭଲଭାବରେ ଖିଅର କରିବାକୁ କହିଲେ । ଏମିତି କରୁ କରୁ ତିନି ଚାରି ଘଣ୍ଟା ବିତିଗଲା । ରାଜା କହିଲେ—ଏତେ ଡେରି କ'ଣ? ବାରିକ କହିଲା—ମହାରାଜ! ରାଜରାଜୁଡ଼ା କଥା, ସାଧାରଣ ଲୋକଙ୍କ ଭଳି ଖିଅର କଲେ କେମିତି ହେବ? ଖିଅର କରିବାରେ ବହୁତ ବିଳମ୍ବ ହୋଇଗଲା । ତା'ପରେ ପୋଷାକ ପିନ୍ଧାଇବା ଲୋକ ଆସିଲା । ସେ ପୋଷାକ ପିନ୍ଧାଇବାରେ ଅଧିକ ବିଳମ୍ବ କରିଦେଲା । ତା'ପରେ ଆସିଲା ଅତର, ତେଲ ଇତ୍ୟାଦି ଲଗାଇ ଦେବା ଲୋକ । ସେ ମଧ୍ୟ ବିଳମ୍ବ କରିଦେଲା । ଏମିତି କରୁ କରୁ ରାତି ପାହିଗଲା । ସକାଳ ହୋଇଗଲା । ସେହି ଦିନଟି ଥିଲା ସେହି ରାଜାଙ୍କ ପାଇଁ ଶେଷ ଦିନ । ସମୟ ବିତିଯିବାରୁ ତାକୁ ରାଜଗାଦି ଛାଡ଼ିବାକୁ ପଡ଼ିଲା । ପୂର୍ବର ରାଜାଙ୍କୁ ପୁଣି ରାଜଗାଦି ମିଳିଲା । ସେହି ରାଜା ତା'ପରେ ଅନ୍ୟ ଜଣେ ମିତ୍ରକୁ ଡକାଇ ତିନି ଦିନ ପାଇଁ ରାଜଗାଦି ଦେଲେ ଏବଂ କହିଲେ—ମୁଁ, ମୋର ସ୍ତ୍ରୀ ଓ ମୋର ଏ ଘରକୁ ଛାଡ଼ି ସାରା ରାଜ୍ୟ ତୁମର । ମୁଁ ତୁମର ପ୍ରଜା । ସେହି ମିତ୍ର ତିନି ଦିନ ପାଇଁ ରାଜା ହୋଇଗଲେ ।

ରାଜ୍ୟ ମିଳିବାମାତ୍ରେ ସେହି ମିତ୍ର ଜଣକ ମନ୍ତ୍ରୀକୁ ପଚାରିଲେ— ‘‘ମୋର କେତେ ଅଧିକାର?’’ ମନ୍ତ୍ରୀ କହିଲେ—‘‘ମହାରାଜ! ସବୁ ସୈନ୍ୟସାମନ୍ତ, ସମ୍ପତ୍ତି ଓ ଏତିକି ଭୂଖଣ୍ଡ ଆପଣଙ୍କ ଅଧିକାରରେ ଅଛି ।’’ ସେ ପନ୍ଦର କୋଡ଼ିଏ ଜଣ ଯୋଗ୍ୟ କର୍ମଚାରୀଙ୍କୁ ଡକାଇ କହିଲେ—‘‘ମୋ ରାଜ୍ୟରେ କେଉଁଠି କେଉଁ ଜିନିଷର ଅଭାବ ରହିଛି ଏବଂ କାହାର କି ଅସୁବିଧା ରହିଛି, ସବୁ କଥା ବୁଝି ମୋତେ କୁହ । କର୍ମଚାରୀମାନେ ଆସି ଖବର ଦେଲେ ଯେ—ଅମୁକ ଗାଁରେ ପାଣିର ଅସୁବିଧା, କୂଅ ନାହିଁ, ଧର୍ମଶାଳା ନାହିଁ, ବିଦ୍ୟାଳୟ ନାହିଁ । ସେହି ରାଜା ଆଦେଶ ଦେଲେ ଯେ ସବୁ ଗାଁରେ ଯେଉଁଠି ଯାହା ଅଭାବ ଅଛି, ତିନି ଦିନ ଭିତରେ ସବୁ ବ୍ୟବସ୍ଥା ହୋଇଯିବା ଉଚିତ । କୋଷାଧ୍ୟକ୍ଷକୁ କହିଦେଲେ ଯେ ଘର, ଧର୍ମଶାଳା, ବିଦ୍ୟାଳୟ, କୂଅ, ପୋଖରୀ ଆଦି ନିର୍ମାଣ କରିବାରେ ଯାହା ଖର୍ଚ୍ଚ ହେବ, ସବୁ ଅବିଳମ୍ବେ ଦିଆଯାଉ । ରାଜାଙ୍କର ଆଦେଶ ହେବାମାତ୍ରେ ଅନେକ ଲୋକ ଆଜ୍ଞାପାଳନରେ

ଲାଗି ପଡ଼ିଲେ । ତିନି ଦିନ ପୂର୍ଣ୍ଣ ନ ହେଉଣୁ ବିଭିନ୍ନ ସ୍ଥାନରୁ ସମାଗ୍ର ଆସିଲା ଯେ, ଏତେ କାମ ପୂର୍ଣ୍ଣ ହୋଇଗଲାଣି ଏବଂ ଏତିକି ବାକି ଅଛି । ଶୀଘ୍ର କରିବା ପାଇଁ ଆଦେଶ ଦେଇ ମିତ୍ର ଜଣଙ୍କ ରାଜାଙ୍କୁ ରାଜ୍ୟ ଫେରାଇ ଦେଲେ । ରାଜା ଅତି ଖୁସି ହେଲେ ଏବଂ କହିଲେ—ମୁଁ ତୁମକୁ ଛାଡ଼ିବି ନାହିଁ । ମୁଁ ତୁମକୁ ମୋର ମନ୍ତ୍ରୀ କରି ରଖିବି । ମୋତେ ରାଜ୍ୟ ମିଳିଛି ସତ, କିନ୍ତୁ ତୁମେ ତିନି ଦିନ ଭିତରେ ପ୍ରଜାମାନଙ୍କ ପ୍ରତି ଯେତେ ଲକ୍ଷ୍ୟ ଦେଲ, ମୁଁ ସେତେ ଦେଇ ନ ଥିଲି । ଏଥର ରାଜା କେବଳ ନାମକୁ ମାତ୍ର ରାଜା ହୋଇ ରହିଲେ ଏବଂ ସେହି ମିତ୍ର ଜଣକ ସବୁଦିନ ପାଇଁ ରାଜାଙ୍କର ବିଶ୍ୱାସର ପାତ୍ର ହୋଇ ରହିଲେ ।

ଠିକ୍ ଏହିପରି ଭଗବାନଙ୍କ ତରଫରୁ ଆମ୍ଭମାନଙ୍କୁ ବାଲ୍ୟାବସ୍ଥା, ଯୁବାବସ୍ଥା ଓ ବୃଦ୍ଧାବସ୍ଥାରୂପକ ତିନି ଦିନିଆ ରାଜ୍ୟ ମିଳିଛି । ଏହି ଅବସରରେ ଯେଉଁମାନେ ଧନସଂଗ୍ରହ ଓ ଭୋଗ ଉପଭୋଗରେ ମାତିଛନ୍ତି, ସେମାନଙ୍କୁ ଖିଅର କରାଯାଉଛି ଏବଂ ଦ୍ୱିତୀୟ ମିତ୍ର ଭଳି ଯେଉଁମାନେ ସେବା କରୁଛନ୍ତି, ସେମାନଙ୍କୁ ଭଗବାନ କହୁଛନ୍ତି—

**'ମୈଁ ତୋ ହୂଁ ଭଗତନ କୋ ଦାସ, ଭଗତ ମେରେ ମୁକୁଟମଣି ॥'**

**[ମୁଁ ଅଟେ ଭକତର ଦାସ, ଭକତ ମୋହର ସର୍ବସ୍ୱ ॥]**

ତେଣୁ ଭାଇମାନେ! ଆମ ପାଖରେ ଯେଉଁ ଧନ, ସମ୍ପତ୍ତି, ବୈଭବ ଆଦି ଅଛି, ସେସବୁ ଦ୍ୱାରା ସମସ୍ତଙ୍କ ପାଇଁ ଉତ୍ତମ ବ୍ୟବସ୍ଥା କରନ୍ତୁ, ସମସ୍ତଙ୍କର ସେବା କରନ୍ତୁ । ଏ ରାଜ୍ୟ ତିନି ଦିନ ପାଇଁ ମିଳିଛି । ଏବେ ଆପଣ ନିଜେ ସ୍ଥିର କରନ୍ତୁ, ଖିଅର ହେବାରେ ସମୟ ବିତାଇବେ, ନା ଭଗବାନଙ୍କର ବିଶ୍ୱାସଭାଜନ ହେବେ । ଲକ୍ଷ୍ମୀ ଆମର ମାତା । ଭଗବାନ ଆମର ପିତା । କେବଳ ଜୀବନନିର୍ବାହ ପାଇଁ ଲକ୍ଷ୍ମୀଙ୍କ ଠାରୁ ନିଅନ୍ତୁ; କିନ୍ତୁ ଲକ୍ଷ୍ମୀଙ୍କୁ ଉପଭୋଗ କରିବା ପାଇଁ, ସ୍ତ୍ରୀ କରିବା ପାଇଁ ଗ୍ରହିଁବା ପାପ । ସେବାଭାବ ରଖିଲେ ମାତା ବି ଖୁସି ହେବେ ଏବଂ ପିତା ବି ଖୁସି ହେବେ । ଆମକୁ ପୁଣିଥରେ ସଂସାରକୁ ଆସିବାକୁ ପଡ଼ିବ ନାହିଁ । ଆମେ ସବୁଦିନ ପାଇଁ ପିତାଙ୍କ ଧାମରେ ରହିବା ।



## ୧୬. ବିଚିତ୍ର ବହୁରୂପୀ

ଥରେ ଜଣେ ବାବାଜୀ କୌଣସି ଏକ ସ୍ଥାନକୁ ଯାଉଥିଲେ। ବାଟରେ ଗୋଟିଏ କ୍ଷେତ ପଡ଼ିଲା। ବାବାଜୀ ସେଠାରେ ପରିସ୍ରା କରିବା ପାଇଁ ବସିଗଲେ। କ୍ଷେତର ମାଲିକ ପଛପଟୁ ବାବାଜୀଙ୍କୁ ଦେଖି ଭାବିଲା, ଏ ଜଣକ ନିଶ୍ଚୟ ସେଇ ତରୁଭୁଜ ଚୋର। ସେ ସମୟରେ ତରୁଭୁଜ ଚୋରି ହେଉଥାଏ। ସେ ପଛରୁ ଆସି ବାବାଜୀଙ୍କ ମୁଣ୍ଡରେ ଠେଙ୍ଗାରେ ପାହାରେ ଦେଲା ଓ କହିଲା—"ମୋ ବିଲରୁ ତରୁଭୁଜ ଚୋରି କରୁଛୁ?" ବାବାଜୀ କହିଲେ—"ଭାଇ! ମୁଁ ତ ପରିସ୍ରା କରିବାକୁ ବସିଥିଲି। କୃଷକ ବାବାଜୀଙ୍କୁ ଦେଖି ବଡ଼ ଦୁଃଖୀ କଲା, କହିଲା—"ଆଜ୍ଞା! ମୋର ବଡ଼ ଭୁଲ୍ ହୋଇଗଲା। ମୁଁ ତରୁଭୁଜ ଚୋର ବୋଲି ଭାବି ଆପଣଙ୍କୁ ବାଡ଼େଇ ଦେଲି!" ବାବାଜୀ କହିଲେ—"ତୋର ଦୋଷ ନାହିଁ। ତୁ କ'ଣ ମୋତେ ବାଡ଼େଇଛୁ, ତୁ ତ ଚୋରକୁ ବାଡ଼େଇଛୁ। ତୁ କ'ଣ ସାଧୁ ବୋଲି ଜାଣି ମୋତେ ମାରିଲୁ?" କୃଷକ କହିଲା—"ନାଇଁ ଆଜ୍ଞା! ଚୋର ବୋଲି ବୁଝି ବାଡ଼େଇ ଦେଲି। ଏବେ ମୁଁ କ'ଣ କରିବି?" ବାବାଜୀ କହିଲେ—ତୋର ଯେମିତି ଇଚ୍ଛା ସେମିତି କର। ବାବାଜୀଙ୍କ ମୁଣ୍ଡରେ ଠେଙ୍ଗା ବାଜିବାରୁ ରକ୍ତ ବହୁଥିଲା ଓ ଯନ୍ତ୍ରଣା ମଧ୍ୟ ହେଉଥିଲା। କୃଷକ ଜଣକ ତାଙ୍କୁ ବଳଦଗାଡ଼ିରେ ନେଇ ଡାକ୍ତରଖାନାରେ ଭର୍ତ୍ତି କରିଦେଲା। ସେଠାରେ ବ୍ୟାଣ୍ଡେଜ ଇତ୍ୟାଦି କରି ତାଙ୍କୁ ଶୁଆଇ ଦିଆଗଲା। କିଛି ସମୟ ପରେ ଜଣେ କ୍ଷୀର ଧରି ଆସିଲା ଓ ବାବାଜୀଙ୍କୁ କହିଲା—"ଗୋସେଇଁ! କ୍ଷୀର ଆଣିଛି, ପିଅନ୍ତୁ।" ବାବାଜୀ ଆଗ ହସିଲେ ଓ ତା'ପରେ କହିଲେ—"ବାଃ! ତୁ ତ ଗୋଟେ ବିଚିତ୍ର ବହୁରୂପୀ। ଆଗେ ଠେଙ୍ଗାରେ ପିଟିଲୁ, ଏବେ କ୍ଷୀର ଧରି ଆସିଛୁ।" ସେ ଲୋକ ଜଣକ କହିଲା—"ଗୋସେଇଁ! ମୁଁ ବାଡ଼େଇନି, ବାଡ଼େଇଥିଲା ଅନ୍ୟ ଜଣେ!" ବାବାଜୀ କହିଲେ—

"ନା, ନା, ମୁଁ ତତେ ଚିହ୍ନିଛି, ତୁ ହିଁ ଠେଙ୍ଗାରେ ବାଡ଼େଇଥିଲୁ। ତୋ ଛଡ଼ା ଆଉ କିଏ ଆସିଲା, କେଉଁଠୁ ଆସିଲା ଓ କେମିତି ଆସିଲା? କହିଲୁ! ଏସବୁ ତୋର ହିଁ ଲୀଳା!" ଏହିପରିଭାବରେ ବାବାଜୀଙ୍କ ଦୃଷ୍ଟି **'ବାସୁଦେବଃ ସର୍ବମ୍'** ପ୍ରତି ଥିଲା, କିନ୍ତୁ ସେ ଲୋକ ଜଣକ ଭାବୁଥିଲା ଯେ, ବାବାଜୀ ତାକୁ ଥାନାରେ ବନ୍ଧାଇ ଦେବେ ନାହିଁ ତ! ମୋଟ ଉପରେ କହିଲେ, ସବୁ ରୂପରେ ଭଗବାନ ହିଁ ବିଦ୍ୟମାନ। ଗୋସ୍ୱାମୀ ତୁଳସୀଦାସ କହିଛନ୍ତି—

**ସୀୟ ରାମମୟ ସବ ଜଗ ଜାନୀ।**
**କରଉଁ ପ୍ରନାମ ଜୋରି ଜୁଗ ପାନୀ॥**

(ମାନସ, ବାଳ. ୮ । ୧)



# ୧୭. ନୂତନ ଜନ୍ମ

ଜଣେ ଚୋର ଥରେ ରାଜାଙ୍କ ନଅରରୁ ଚୋରି କଲା । ରାଜାଙ୍କ ସିପାହିମାନଙ୍କୁ ଜଣାପଡ଼ିବାରୁ ସେମାନେ ତା' ପାଦଚିହ୍ନ ଦେଖି ଦେଖି ତା' ପଛରେ ଗୋଡ଼ାଇଲେ । ଚୋରର ପାଦଚିହ୍ନ ଦେଖି ଦେଖି ସେମାନେ ନଗର ବାହାରକୁ ଆସିଗଲେ । ପାଖରେ ଗୋଟିଏ ଗାଁଆ ଥିଲା । ସେମାନେ ଚୋରର ପାଦଚିହ୍ନ ଗାଁଆ ଆଡ଼କୁ ଯାଇଥିବାର ଦେଖିଲେ । ସିପାହିମାନେ ଗାଁଆ ଚାରିପଟେ ବୁଲି ବୁଲି ଦେଖି ଜାଣି ପାରିଲେ ଯେ, ଚୋର ଗାଁଆ ଭିତରେ ହିଁ ଅଛି; ବାହାରକୁ ଯାଇ ନାହିଁ । ଗାଁଆ ଭିତରକୁ ଯାଇ ସେମାନେ ଦେଖିବାକୁ ପାଇଲେ ଯେ, ଗୋଟିଏ ସ୍ଥାନରେ ସତ୍ସଙ୍ଗ ହେଉଛି; ବହୁତ ଲୋକ ବସି ସତ୍ସଙ୍ଗ ଶୁଣୁଛନ୍ତି । ସିପାହିମାନଙ୍କର ସନ୍ଦେହ ହେଲା ଯେ, ବୋଧହୁଏ ଚୋର ମଧ୍ୟ ସତ୍ସଙ୍ଗରେ ବସିଛି । ସେମାନେ ସେହିଠାରେ ଠିଆ ହୋଇ ତାକୁ ଅପେକ୍ଷା କଲେ ।

ସତ୍ସଙ୍ଗରେ ସନ୍ଥ କହୁଥିଲେ—ଯେ ହୃଦୟର ସହ ଭଗବାନଙ୍କର ଶରଣାପନ୍ନ ହୋଇଯାଏ, ଭଗବାନ ତା'ର ସମସ୍ତ ପାପକୁ କ୍ଷମା କରିଦିଅନ୍ତି । ଭଗବାନ କହିଛନ୍ତି—

**ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।**
**ଅହଂ ତ୍ୱା ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ॥**

(ଗୀତା ୧୮ । ୬୬)

''ସମସ୍ତ ଧର୍ମର ଆଶ୍ରୟ ଛାଡ଼ି ତୁମେ କେବଳ ମୋର ଶରଣକୁ ଆସିଯାଅ । ମୁଁ ତୁମକୁ ସମସ୍ତ ପାପରୁ ମୁକ୍ତ କରିଦେବି, ଚିନ୍ତା କର ନାହିଁ ।''

**ସକୃଦେବ ପ୍ରପନ୍ନାୟ ତବାସ୍ମୀତି ଚ ଯାଚତେ ।**
**ଅଭୟଂ ସର୍ବଭୂତେଭ୍ୟୋ ଦଦାମ୍ୟେତଦ୍ ବ୍ରତଂ ମମ ॥**

(ବାଲ୍ମୀକିରାମାୟଣ ୬ । ୧୮ । ୩୩)

''ଯେ ଥରେମାତ୍ର ବି ମୋର ଶରଣାପନ୍ନ ହୋଇ 'ମୁଁ ତୁମର'

ଏପରି କହି ମୋ'ଠାରୁ ଆଶ୍ରୟ ଭିକ୍ଷା କରେ, ମୁଁ ତାକୁ ସମସ୍ତ ପ୍ରାଣୀଙ୍କ ଠାରୁ ଅଭୟ କରିଦିଏ—ଏହା ହେଉଛି ମୋର ବ୍ରତ।''

ଏହି ଶ୍ଳୋକଟିର ବ୍ୟାଖ୍ୟା କରି ସନ୍ଥ ଜଣକ କହିଲେ, ଯିଏ ଭଗବାନଙ୍କର ହୋଇଗଲା, ତା'ର ନୂତନ ଜନ୍ମ ହୋଇଗଲା ବୋଲି ଜାଣ! ଏଣିକି ସେ ଆଉ ପାପୀ ହୋଇ ରହିଲା ନାହିଁ; ସେ ସାଧୁ ହୋଇଗଲା!

**ଅପି ଚେତ୍ସୁଦୁରାଚାରୋ ଭଜତେ ମାମନନ୍ୟଭାକ୍ ।**
**ସାଧୁରେବ ସ ମନ୍ତବ୍ୟଃ ସମ୍ୟଗ୍ ବ୍ୟବସିତୋ ହି ସଃ ॥**

(ଗୀତା ୯ । ୩୦)

''ଯଦି କୌଣସି ଅତ୍ୟନ୍ତ ଦୁରାଚାରୀ ମଧ୍ୟ ଅନନ୍ୟଭାବରେ ଭକ୍ତ ହୋଇ ମୋର ଭଜନ କରେ, ତାକୁ ଅବଶ୍ୟ ସାଧୁ ବୋଲି ମାନିନେବା ଉଚିତ। କାରଣ ସେ ଉତ୍ତମରୂପେ ଦୃଢ଼ନିଶ୍ଚୟ କରି ନେଇଛି।''

ସେଠାରେ ବସି ଚୋର ଏ କଥା ଶୁଣୁଥାଏ। ତା' ଉପରେ ଏହି ସତ୍ସଙ୍ଗ କଥାର ପ୍ରଭାବ ପଡ଼ିଲା। ସେଇଠି ବସି ବସି ସେ ନିର୍ଣ୍ଣୟ କରିନେଲା, ''ମୁଁ ଆଜିଠୁ ଭଗବାନଙ୍କର ଶରଣାପନ୍ନ ହୋଇଗଲି!'' ସତ୍ସଙ୍ଗ ଶେଷ ହେଲା। ଲୋକେ ସେଠାରୁ ବାହାରକୁ ବାହାରିଲେ। ବାହାରେ ଠିଆ ହୋଇ ରାଜାଙ୍କ ସିପାହିମାନେ ସମସ୍ତଙ୍କ ପାଦଚିହ୍ନକୁ ଦେଖୁଥାଆନ୍ତି। ଚୋର ଜଣକ ବାହାରକୁ ବାହାରିବା ବେଳକୁ ସିପାହିମାନେ ତା' ପାଦଚିହ୍ନ ଦେଖି ଚିହ୍ନି ପାରିଲେ ଓ ତାକୁ ଧରିନେଲେ।

ସିପାହିମାନେ ଚୋରକୁ ରାଜାଙ୍କ ଆଗରେ ହାଜର କରାଇ କହିଲେ—''ମହାରାଜ! ଆମେ ଚୋରକୁ ଧରିଆଣିଛୁ। ଏଇ ଚୋରି କରିଛି।'' ରାଜା ଚୋରକୁ ପଚାରିଲେ—''ଆମ ନଅରରୁ ତୁ ଚୋରି କରିଛୁ? ସତ କଥା କହିଦେ, ତୁ ଚୋରି କରି ଧନ କେଉଁଠି ରଖିଛୁ?'' ଚୋର ନିର୍ଭିକଭାବରେ କହିଲା—''ମହାରାଜ! ମୁଁ ଚୋରି କରି ନାହିଁ। ମୁଁ ଏ ଜନ୍ମରେ କଦାପି ଚୋରି କରି ନାହିଁ!'' ସିପାହିମାନେ କହିଲେ— ''ମହାରାଜ! ଇଏ ମିଛ କହୁଛି। ଆମେ ଏହାର ପାଦଚିହ୍ନକୁ ଚିହ୍ନିଛୁ।

ଏହାର ପାଦଚିହ୍ନରୁ ଇଏ ଚୋରି କରିଥିବାର ପ୍ରମାଣିତ ହେଉଛି।" ଚୋର ସତ କହୁଛି ନା ମିଛ କହୁଛି ଜାଣିବା ପାଇଁ ପରୀକ୍ଷା କରିବାକୁ ରାଜା ଆଦେଶ ଦେଲେ।

ଚୋରର ହାତରେ ଦୁଇଟି ଓସ୍ତ ପତ୍ର ରଖି ତାହାକୁ ସୂତାରେ ବାନ୍ଧି ଦିଆଗଲା। ତା'ପରେ ଖଣ୍ଡେ ଲୁହା ଗରମ କରି ନାଲି ଟହଟହ ହୋଇଥିବା ଅବସ୍ଥାରେ ତା' ହାତରେ ରଖାଗଲା। ଆଶ୍ଚର୍ଯ୍ୟର କଥା! ତା' ହାତ ପୋଡ଼ିବା ଦୂରେ ଥାଉ, ହାତରେ ବନ୍ଧା ଯାଇଥିବା ଓସ୍ତ ପତ୍ର ଓ ସୂତା ମଧ୍ୟ ପୋଡ଼ିଲା ନାହିଁ। ତା'ପରେ ସେ ତାତିଲା ଲୁହାଟିକୁ ତଳେ ପକାଇଦେଲା। ଲୁହାଟି ଯେଉଁଠି ପଡ଼ିଲା, ସେଇ ଜାଗାଟି କଳା ପଡ଼ିଗଲା। ରାଜା ଦେଖିଲେ ଯେ ବାସ୍ତବରେ ଏ ଚୋରି କରି ନାହିଁ, ଏ ନିର୍ଦ୍ଦୋଷ। ରାଜା ସିପାହିମାନଙ୍କ ଉପରେ ବହୁତ ରାଗିଗଲେ; କହିଲେ—"ତୁମ୍ଭେମାନେ ଜଣେ ନିର୍ଦ୍ଦୋଷ ଲୋକକୁ ମିଛଟାରେ ଚୋର ବୋଲି କହୁଛ। ତୁମ୍ଭମାନଙ୍କୁ ଦଣ୍ଡ ଦିଆଯିବ।" ଏହା ଶୁଣି ସେ ଲୋକଟି କହିଲା—"ନା, ମହାରାଜ! ଏମାନଙ୍କୁ ଦଣ୍ଡ ଦିଅନ୍ତୁ ନାହିଁ। ଏମାନଙ୍କର କୌଣସି ଦୋଷ ନାହିଁ। ମୁଁ ଚୋରି କରିଥିଲି!" ରାଜା ଭାବିଲେ ଏ ଜଣେ ସାଧୁ ପୁରୁଷ, ତେଣୁ ସିପାହିମାନଙ୍କୁ ଦଣ୍ଡରୁ ରକ୍ଷା କରିବା ପାଇଁ ଚୋରିରୂପକ ଦୋଷକୁ ଏ ନିଜେ ଅଙ୍ଗୀକାର କରୁଛନ୍ତି। ରାଜା କହିଲେ—"ତୁମେ ଏମାନଙ୍କ ଉପରେ ଦୟା କରି, ଏମାନଙ୍କୁ ରକ୍ଷା କରିବା ପାଇଁ ଏପରି କହୁଛ; କିନ୍ତୁ ମୁଁ ଏମାନଙ୍କୁ ଅବଶ୍ୟ ଦଣ୍ଡ ଦେବି।" ଚୋର କହିଲା—"ମହାରାଜ! ମୁଁ ମିଛ କହୁନି, ମୁଁ ଚୋରି କରିଥିଲି। ମୁଁ ଚୋରି କରିଥିବା ଧନକୁ ନେଇ ଜଙ୍ଗଲରେ ଯେଉଁଠି ରଖିଛି, ସେଠାରୁ ଆଣି ଆପଣଙ୍କୁ ଦେଇଦେବି।" ରାଜା ନିଜର ଲୋକଙ୍କୁ ଚୋର ସାଙ୍ଗରେ ପଠାଇଲେ। ଚୋର ଜଙ୍ଗଲରେ ଯେଉଁଠି ଧନ ପୋତି ଦେଇଥିଲା, ସେମାନଙ୍କୁ ସେଠାକୁ ନେଇ ଦେଖାଇଲା ଓ ସେ ସେଠାରୁ ସବୁ ଧନ ଆଣି ରାଜାଙ୍କ ଆଗରେ ରଖିଦେଲା। ଏହା ଦେଖି ରାଜା ଆଶ୍ଚର୍ଯ୍ୟ ହୋଇଗଲେ! ରାଜା କହିଲେ—"ଯଦି ତୁମେ ଚୋରି କରିଥିଲ, ତେବେ ପରୀକ୍ଷାରେ ତୁମ ହାତ ପୋଡ଼ିଗଲା ନାହିଁ କାହିଁକି? ତୁମର

ହାତ ମଧ୍ୟ ପୋଡ଼ିଲାନି ଏବଂ ତୁମେ ଧନ ମଧ୍ୟ ଆଣିଦେଲ—ଏ କଥା କ'ଣ ମୁଁ କିଛି ବୁଝି ପାରୁନି! ସତ କୁହ, ଘଟଣା କ'ଣ?

ଚୋର କହିଲା—''ମହାରାଜ! ଚୋରି କରିସାରି ମୁଁ ଧନ ନେଇ ଜଙ୍ଗଲରେ ପୋତିଦେଲି ଏବଂ ଅମୁକ ଗାଁଆକୁ ଗଲି। ସେଠାରେ ଗୋଟିଏ ସ୍ଥାନରେ ସତ୍ସଙ୍ଗ ହେଉଥିଲା। ସେଠାକୁ ଯାଇ ମୁଁ ଲୋକଙ୍କ ମେଳରେ ବସିଗଲି। ସତ୍ସଙ୍ଗରେ ମୁଁ ଶୁଣିଲି ଯେ, ଭଗବାନଙ୍କର ଶରଣ ନେଇ ଆଗକୁ ଆଉ ପାପ କରିବ ନାହିଁ ବୋଲି ଯିଏ ଦୃଢ଼ନିଶ୍ଚୟ କରିନିଏ, ଭଗବାନ ତାକୁ ସମସ୍ତ ପାପରୁ ମୁକ୍ତ କରି ଦିଅନ୍ତି। ତା'ର ନୂତନ ଜନ୍ମ ହୋଇଯାଏ। ମୋ ଉପରେ ଏ କଥାର ବହୁତ ପ୍ରଭାବ ପଡ଼ିଲା ଏବଂ ମୁଁ ଆଉ ଚୋରି କରିବି ନାହିଁ ବୋଲି ଦୃଢ଼ନିଶ୍ଚୟ କଲି। ଏଥର ମୁଁ ଭଗବାନଙ୍କର ହୋଇଗଲି। ତେଣୁ ସେତିକି ବେଳଠାରୁ ମୋର ନୂତନ ଜନ୍ମ ହୋଇଗଲା। ଏ ଜନ୍ମରେ ମୁଁ କେବେ ଚୋରି କରି ନାହିଁ, ତେଣୁ ମୋ ହାତ ପୋଡ଼ିଲା ନାହିଁ। ଆପଣଙ୍କ ନଅରରୁ ମୁଁ ଯେଉଁ ଚୋରି କରିଥିଲି, ତାହା ପୂର୍ବଜନ୍ମର କଥା!''



# ୧୮. କଲ୍ୟାଣ ହେବ କିପରି?

ଜଣେ ବେଶ୍ୟା ଥିଲା । ତା' ମନରେ ଆତ୍ମକଲ୍ୟାଣର ଭାବନା ଜାଗ୍ରତ ହେଲା । ଆତ୍ମକଲ୍ୟାଣ (ଉଦ୍ଧାର) ପାଇଁ ସେ ସାଧୁମାନଙ୍କ ପାଖକୁ ଗଲା । ସେମାନେ କହିଲେ, ''ତୁ ସାଧୁମାନଙ୍କର ସଙ୍ଗ କର । ସାଧୁମାନେ ହେଉଛନ୍ତି ତ୍ୟାଗୀ; ତେଣୁ ସେମାନଙ୍କର ସେବା କଲେ ତୋର କଲ୍ୟାଣ ହେବ । ତା'ପରେ ସେ ବ୍ରାହ୍ମଣମାନଙ୍କ ପାଖକୁ ଗଲା । ସେମାନେ କହିଲେ—''ସାଧୁମାନେ ତ ପରେ ସାଧୁ ହୋଇଛନ୍ତି, କିନ୍ତୁ ଆମେ ଜନ୍ମରୁ ବ୍ରାହ୍ମଣ । ବ୍ରାହ୍ମଣ ସମସ୍ତଙ୍କର ଗୁରୁ; ତେଣୁ ତୁ ବ୍ରାହ୍ମଣମାନଙ୍କର ସେବା କଲେ ତୋର କଲ୍ୟାଣ ହେବ ।'' ତା'ପରେ ସେ ସନ୍ନ୍ୟାସୀମାନଙ୍କ ପାଖକୁ ଗଲା । ସେମାନେ କହିଲେ— ''ସନ୍ନ୍ୟାସୀ ହେଉଛି ସମସ୍ତ ବର୍ଣ୍ଣର ଗୁରୁ, ତେଣୁ ସେମାନଙ୍କର ସେବା କଲେ କଲ୍ୟାଣ ହେବ ।'' ତା'ପରେ ସେ ବୈରାଗୀମାନଙ୍କ ପାଖକୁ ଗଲା । ସେମାନେ କହିଲେ—''ବୈରାଗୀ ସବୁଠୁ ଶ୍ରେଷ୍ଠ; ତେଣୁ ସେମାନଙ୍କର ସେବା କଲେ ତୋର କଲ୍ୟାଣ ହେବ ।'' ତା'ପରେ ବିଭିନ୍ନ ସମ୍ପ୍ରଦାୟର ଗୁରୁମାନଙ୍କ ପାଖକୁ ଗଲା । ସେମାନେ କହିଲେ—''ଆମ ବ୍ୟତୀତ ଅନ୍ୟ ସମସ୍ତେ ଭଣ୍ଡ । ତୁ ଆମର ଚେଲୀ ହୋଇଯା', ଆମଠାରୁ ମନ୍ତ୍ର ନେ', ତା'ପରେ ଆମେ ତୋର କଲ୍ୟାଣ କିପରି ହେବ କହିବୁ ।'' ଏହିପରି ଭାବରେ ବେଶ୍ୟା ଯେଉଁଠିକି ଯାଉଥାଏ, ସେଠାରେ ତାକୁ ବର୍ଣ୍ଣ, ଆଶ୍ରମ, ମତ, ସମ୍ପ୍ରଦାୟ ଇତ୍ୟାଦି ପ୍ରତି ଲୋକଙ୍କର ପକ୍ଷପାତିତା ଥିବାର ଦେଖାଯାଉଥାଏ । ଏପରି ଦେଖି ସେ ମନେ ମନେ ଭାବିଲା, ଏବେ ସବୁ ତତ୍ତ୍ୱ ବୁଝି ହୋଇଗଲା! ଉପାୟ ମିଳିଗଲା! ସାଧୁ ସାଧୁମାନଙ୍କର ପୂଜା କରିବାକୁ କହୁଛନ୍ତି, ବ୍ରାହ୍ମଣ ବ୍ରାହ୍ମଣମାନଙ୍କର ପୂଜା କରିବାକୁ କହୁଛନ୍ତି । ତେବେ ମୁଁ ବେଶ୍ୟାମାନଙ୍କର ପୂଜା ନ କରିବି କାହିଁକି? ଏପରି ବିଚ୍ଚର କରି ସେ ବେଶ୍ୟାମାନଙ୍କୁ ଭୋଜି ଦେବା ପାଇଁ ସ୍ଥିର କଲା । ସେ ସବୁ ବେଶ୍ୟାଙ୍କୁ ନିମନ୍ତ୍ରଣ ଦେଲା । ନିର୍ଦ୍ଦିଷ୍ଟ ସମୟରେ ବେଶ୍ୟାମାନେ ଆସି ପହଞ୍ଚିଗଲେ ।

ସେହି ଗାଆଁ ବାହାରେ ଜଣେ ବିରକ୍ତ ଓ ତ୍ୟାଗୀ ସନ୍ଥ ରହୁଥିଲେ । ଏସବୁ ଦେଖି ସେ ଭାବିଲେ, ଆଜି ଏ କ'ଣ ହେଉଛି? ବେଶ୍ୟାଭୋଜି ହେଉଥିବାର ଜାଣିପାରି ସେ ବେଶ୍ୟାକୁ କ୍ରିୟାତ୍ମକ ଶିକ୍ଷା ଦେବା ପାଇଁ

ସେଠାରେ ପହଞ୍ଚିଲେ । ରୋଷେଇ ଗ୍ଲିଥାଏ । ରୋଷେଇଆମାନେ ଭାତ ରାନ୍ଧି ସାରି ପେଜ ସେହି ନାଳରେ ଢାଳି ଦେଇଥିଲେ । ବେଶ୍ୟା ଛାତ ଉପରେ ଠିଆ ହୋଇ ଯେଉଁ ଆଡ଼କୁ ଗ୍ହିଁଥିଲା, ବାବାଜୀ ସେହି ଦିଗରେ ବସି ନାଳରେ ବହୁଥିବା ପେଜରେ ହାତ ଧୋଇବାକୁ ଲାଗିଲେ । ଏହା ଦେଖି ବେଶ୍ୟା କହିଲା—"ବାବାଜୀ! ଏ କ'ଣ କରୁଛନ୍ତି?" ବାବାଜୀ କହିଲେ—"ତୁ କ'ଣ ଅନ୍ଧୁଣୀ? ତତେ କ'ଣ ଦେଖାଯାଉନି? ଆଉ କରନ୍ତି କ'ଣ, ହାତ ଧୋଉଛି ।" ସେପରି କରିବାକୁ ବେଶ୍ୟା ଯେତେ ବାରଣ କଲେ ବି ସନ୍ଥ ଜଣକ କିଛି ଶୁଣୁ ନ ଥାନ୍ତି । ବେଶ୍ୟା ଛାତରୁ ତଳକୁ ଓହ୍ଲାଇ ଆସି କହିଲା—"ବାବାଜୀ! ଏହା ପେଜ ପରା, ଏଥିରେ କ'ଣ ହାତ ଧୋଉଛନ୍ତି! ଏଥିରେ ହାତ ଧୋଇଲେ ହାତ ବରଂ ଅଧିକ ମଇଳା ହେବ ।" ବାବାଜୀ କହିଲେ—"ଯଦି ଏଥିରେ ହାତ ମଇଳା ହୋଇଯିବ, ତେବେ ବେଶ୍ୟାମାନେ କ'ଣ ଅଧିକ ନିର୍ମଳ ଓ ଶୁଦ୍ଧ ଯେ ସେମାନଙ୍କର ସେବାରେ କଲ୍ୟାଣ ହେବ? ହାତ ମଇଳା ପାଣିରେ ସଫା ହୁଏ କି ସଫା ପାଣିରେ? ଏହା ଶୁଣି ବେଶ୍ୟାର ଚେତନା ଆସିଲା ଯେ ବାବାଜୀ ସତ କହୁଛନ୍ତି! ସେ ପଗ୍ରିଲା, ତେବେ କଲ୍ୟାଣ ହେବ କିପରି? ବାବାଜୀ କହିଲେ—"ଯାହାଙ୍କର କୌଣସି ମତ, ସମ୍ପ୍ରଦାୟ ପ୍ରତି ପକ୍ଷପାତିତା ଓ ଆଗ୍ରହ ନ ଥିବ, ଯାହାଙ୍କର ଆଚରଣ ଶୁଦ୍ଧ ହୋଇଥିବ, ଯାହାଙ୍କ ହୃଦୟରେ ଜୀବମାନଙ୍କ କଲ୍ୟାଣ କରିବାର ଏକମାତ୍ର ଭାବନା ଥିବ ଏବଂ କୌଣସି ପ୍ରକାର କାମନା ନ ଥିବ, ସେ ସ୍ତ୍ରୀ ହୋଇଥାନ୍ତୁ ବା ପୁରୁଷ ହୋଇଥାନ୍ତୁ, ସାଧୁ ହୋଇଥାନ୍ତୁ ବା ବ୍ରାହ୍ମଣ ହୋଇଥାନ୍ତୁ, ଯେ କୌଣସି ବର୍ଣ୍ଣ, ଆଶ୍ରମ, ସମ୍ପ୍ରଦାୟ ଆଦିର ହୋଇଥାନ୍ତୁ, ତାଙ୍କର ସତ୍ସଙ୍ଗ କଲେ, ତାଙ୍କ ଉପଦେଶ ମାନିଲେ କଲ୍ୟାଣ (ଉଦ୍ଧାର) ହେବ ।"

ତାତ୍ପର୍ଯ୍ୟ ହେଲା, ଯେଉଁଠି ସ୍ୱାର୍ଥ ଓ ଅଭିମାନ ରହିଛି, ଭୋଗ ଓ ସଂଗ୍ରହର ଇଚ୍ଛା ରହିଛି, ସେଠାରେ ଅବଶ୍ୟ ଆସୁରୀସମ୍ପତ୍ତି ରହିବ । ଯେଉଁଠି ଆସୁରୀସମ୍ପତ୍ତି ରହିବ, ସେଠାରେ ଶାନ୍ତି ରହିବ ନାହିଁ, ବରଂ ଅଶାନ୍ତି, ସଂଘର୍ଷ ଓ ପତନ ହେବ ।



## ୧୯. ଭଗବାନଙ୍କ ଇଚ୍ଛା

ଜଣେ ବାବାଜୀ ଥିଲେ। ସେ ଡଙ୍ଗାରେ ବସି କୌଣସି ସ୍ଥାନକୁ ଯାଉଥିଲେ। ଡଙ୍ଗାରେ ଆହୁରି ବହୁତ ଲୋକ ମଧ୍ୟ ଥିଲେ। ଯୋଗକୁ ଡଙ୍ଗା ଭଉଁରିରେ ପଡ଼ିଗଲା। ଡଙ୍ଗା ଟଳମଳ ହେବାରୁ ନାଉରି କହିଲା— "ନିଜ ନିଜର ଇଷ୍ଟଙ୍କୁ ସ୍ମରଣ କର। ଏବେ ଡଙ୍ଗା ମୋ ଆୟତ୍ତରେ ନାହିଁ। ପାଣିସୁଅ ଖୁବ୍ ଜୋର୍ ଏବଂ ଭଉଁରି ପଡ଼ିଛି, ବୁଡ଼ି ଯାଇପାରେ, ତେଣୁ ପ୍ରଭୁଙ୍କୁ ସ୍ମରଣ କର।" ଏହା ଶୁଣି କେତେକ କନ୍ଦାକଟା ଆରମ୍ଭ କରିଦେଲେ ଏବଂ ଆଉ କେତେକ ଭଗବାନଙ୍କୁ ସ୍ମରଣ କଲେ। ବାବାଜୀ ମଧ୍ୟ ସେଥିରେ ବସିଥିଲେ। ତାଙ୍କ ପାଖରେ କମଣ୍ଡଳୁ ଥିଲା। ସେ ***'ଜୟ ସିୟାରାମ ଜୟ ଜୟ ସିୟାରାମ! ଜୟ ସିୟାରାମ ଜୟ ଜୟ ସିୟାରାମ!'*** କହି କମଣ୍ଡଳୁରେ ପାଣି ପୂରାଇ ଡଙ୍ଗାରେ ଭର୍ତ୍ତି କଲେ। ଲୋକେ କହିଲେ—"ବାବା! ଏ କ'ଣ କରୁଛନ୍ତି?" କିନ୍ତୁ ଶୁଣୁଛି କିଏ, ସେ ତ କମଣ୍ଡଳୁରେ ନଦୀରୁ ପାଣି ଭର୍ତ୍ତି କରି ଡଙ୍ଗାରେ ପୂରାଇବାରେ ଏବଂ ***'ଜୟ ସିୟାରାମ ଜୟ ଜୟ ସିୟାରାମ'*** କହିବାରେ ବ୍ୟସ୍ତ। କିଛି ସମୟ ପରେ ଡଙ୍ଗା ବୁଲି ବୁଲି ନାଉରିର କରାୟତ୍ତକୁ ଆସିଲା। ତା'ପରେ ନାଉରି କହିଲା—"ଏଥର ଡରିବାର କିଛି ନାହିଁ, କୂଳ ପାଖେଇ ଆସିଲାଣି।" ଏହା ଶୁଣି ବାବାଜୀ ଡଙ୍ଗାରୁ ପାଣି ବାହାର କରିବାକୁ ଲାଗିଲେ ଏବଂ ପୂର୍ବପରି ***'ଜୟ ସିୟାରାମ ଜୟ ଜୟ ସିୟାରାମ.........'*** କହୁଥାନ୍ତି। ଲୋକେ ତାଙ୍କୁ କହିଲେ—"ତୁମେ ପାଗଳ କି? ଏମିତିକା କାମ କରୁଛ ଯେ!" ବାବାଜୀ କହିଲେ—"କ'ଣ ହେଲା କି?" ଲୋକେ କହିଲେ—"ସାଧୁ ହୋଇଛ, ତୁମର ଟିକେ ଦୟାମାୟା ନାହିଁ? ବେଶ ତ ତୁମର ସାଧୁଙ୍କ ପରି, ଏଣେ କାମ କରୁଛ ମୂର୍ଖଙ୍କ ଭଳି? ଲୋକମାନେ ବୁଡ଼ି ଯାଇଥିଲେ କ'ଣ ହୋଇଥାନ୍ତା!" ବାବାଜୀ କହିଲେ—"ଏଥିରେ ଦୟା କ'ଣ? ମୁଁ ସିନା ଡଙ୍ଗାରୁ ବାହାରେ ଥିଲେ ଦୟାର ପ୍ରଶ୍ନ ଉଠନ୍ତା, ମୁଁ ତ ତୁମ ସାଥିରେ ଥିଲି! ଦ୍ୱିତୀୟରେ ସହଜେ ମୁଁ ସାଧୁ, ତେବେ ମୂର୍ଖଙ୍କ ଭଳି କାମ କେମିତି କରିବି?"

ଲୋକେ କହିଲେ—"ଡଙ୍ଗା ଭଉଁରିରେ ପଡ଼ିଥିଲାବେଳେ ତୁମେ ଡଙ୍ଗାରେ ପାଣି ଭର୍ତ୍ତି କଲ ଏବଂ ଭଉଁରିରୁ ବାହାରକୁ ବାହାରିବା ପରେ ପାଣି ଖାଲି କଲ ଯେ! ଏମିତି ଓଲଟା କାମ କଲ କାହିଁକି?" ବାବାଜୀ କହିଲେ—"ମୁଁ ଓଲଟା କାମ କରି ନାହିଁ, ସିଧା ହିଁ କରିଛି। ଓଲଟା କେମିତି ହେଲା, କହିଲ?" ଲୋକେ କହିଲେ—"ସିଧା କେମିତି ହେଲା, କହିଲ?" ବାବାଜୀ କହିଲେ—'ସିଧା ଏମିତି ହେଲା ଯେ, କ'ଣ ହେବ କ'ଣ ନାହିଁ, ସେ କଥା ଆମେ ପୂର୍ଣ୍ଣଭାବେ ଜାଣି ନାହେଁ। ମୁଁ ଭାବିଲି ଭଗବାନ ଡଙ୍ଗା ବୁଡ଼ାଇବାକୁ ଚାହାନ୍ତି। ତାଙ୍କର ଯଦି ଇଚ୍ଛା ଅଛି, ତେବେ ସେଥିରେ ଟିକେ ସାହାଯ୍ୟ କରିଦେବା ଏବଂ ଯେତେବେଳେ ଡଙ୍ଗା ଭଉଁରିରୁ ବାହାରିଗଲା, ମୁଁ ଭାବିଲି ଯେ, ଭଗବାନ ଡଙ୍ଗା ବୁଡ଼ାଇବାକୁ ଚାହୁଁ ନାହାନ୍ତି। ତେଣୁ ତାଙ୍କର ଏପରି ଇଚ୍ଛା ଅଛି ବୋଲି ଭାବି ମୁଁ ପାଣି ବାହାରକୁ ଫିଙ୍ଗିଲି। ମୁଁ ତ ସାଧୁ, ମୋର ଆଉ ମରିବାରେ ବା ବଞ୍ଚିବାରେ କି ପ୍ରୟୋଜନ, ଭଗବାନଙ୍କ ଇଚ୍ଛାରେ ଇଚ୍ଛା ମିଶାଇ ଦେଲେ କାମ ଶେଷ। ଆମକୁ ତ ପୂରାପୂରି ଜଣା ନାହିଁ। ପ୍ରଥମରୁ ଯଦି ଜାଣିଥାଆନ୍ତି ଯେ, ଡଙ୍ଗା ବୁଡ଼ାଇବା ପାଇଁ ଭଗବାନଙ୍କର ଇଚ୍ଛା ନାହିଁ, ସେ ସେମିତି ଖେଳ ଖେଳୁଛନ୍ତି, ତେବେ ମୁଁ ପାଣି ଭର୍ତ୍ତି କରି ନ ଥାଆନ୍ତି। କିନ୍ତୁ ସେତେବେଳେ ମନରେ ଏପରି ଭାବନା ସୃଷ୍ଟି ହେଲା ନାହିଁ। ମୁଁ ବୁଝିଲି, ଭଗବାନ ଡଙ୍ଗା ବୁଡ଼ାଇବା ପାଇଁ ସଙ୍କେତ ଦେଉଛନ୍ତି।"

ଏହା ହେଉଛି ଶରଣାଗତ ଭକ୍ତଙ୍କର ଲକ୍ଷଣ। ସେହି ସନ୍ଥ ଜଣକ ସିନା ଏପରି କରିଥିଲେ; କିନ୍ତୁ ଆପଣମାନଙ୍କୁ ଅନୁରୋଧ ଯେ, କେଉଁଠି ଡଙ୍ଗା ବୁଡ଼ି ଯାଉଥିଲେ ସେଥିରେ ପାଣି ଭର୍ତ୍ତି କରିବେ ନାହିଁ; କିନ୍ତୁ ଆଦୌ କନ୍ଦାକଟା କରିବେ ନାହିଁ। ସେତେବେଳେ ବୁଝିବା ଉଚିତ ଯେ, ଭଲ ହେଲା, ବଡ଼ ଆନନ୍ଦର କଥା; ଏଥିରେ ମଧ୍ୟ ଭଗବାନଙ୍କର କୌଣସି ମଙ୍ଗଳମୟ ବିଧାନ ଲୁଚି ରହିଛି।



## ୨୦. ବୁଦ୍ଧିମାନ୍ ରାଜା

କାହାର ଅଧିକ ଧନ ହୋଇଯିବାଟା ଯେ ବିଶେଷ ଭଗବତ୍‌କୃପାର ଲକ୍ଷଣ, ତା'ନୁହେଁ। ଧନାଦି ବସ୍ତୁ ତ ପାପୀକୁ ମଧ୍ୟ ମିଳିଯାଏ— ***'ସୁତ ଦାରା ଅରୁ ଲକ୍ଷ୍ମୀ ପାପୀ କେ ଭୀ ହୋୟ୍।'*** ଏସବୁ ମିଳିବାଟା କୌଣସି ବଡ଼ କଥା ନୁହେଁ। ଜଣେ ରାଜା ଥିଲେ। ସାଧୁବେଶ ପ୍ରତି ତାଙ୍କର ପ୍ରଗାଢ଼ ନିଷ୍ଠା ଥିଲା। ଏପରି ନିଷ୍ଠା କେଉଁଠି କ୍ୱଚିତ୍ ଦେଖିବାକୁ ମିଳେ। ସେ ସାଧୁସନ୍ଥଙ୍କୁ ଦେଖିଲେ ଅତି ଖୁସି ହୁଅନ୍ତି। ସାଧୁବେଶରେ କେହି ଆସିଗଲେ, ସେ ଯାହା ହୋଇଥିଲେ ବି ରାଜା ତାଙ୍କୁ ଅତି ଆଦର କରନ୍ତି ଓ ସେବା କରନ୍ତି। ଅମୁକ ସ୍ଥାନକୁ ସନ୍ଥ ଆସୁଛନ୍ତି ବୋଲି ଶୁଣିଲେ ସେ ଚ୍ଛଲି ଚ୍ଛଲି ଯାଆନ୍ତି ଏବଂ ସମ୍ମାନର ସହିତ ତାଙ୍କୁ ପାଛୋଟି ଆଣି ନିଜ ରାଜମହଲରେ ରଖନ୍ତି ଓ ଖୁବ୍ ସେବା କରନ୍ତି। ସାଧୁ ଯାହା ମାଗନ୍ତି, ତାହା ଦିଅନ୍ତି। ଏପରିଭାବରେ ସେ ପ୍ରସିଦ୍ଧ ହୋଇଗଲେ। ପଡ଼ୋଶୀ ଦେଶର ଜଣେ ରାଜା ଏ କଥା ଶୁଣିଥିଲେ। ସେ ମନେ ମନେ ଭାବିଲେ, ଏ ରାଜାଟା ବଡ଼ ମୂର୍ଖ; ସାଧୁ ବେଶ ଧରି ତାକୁ ଯେ କେହିହେଲେ ଠକି ଦେଇ ପାରିବ। ସେ ଜଣେ ବହୁରୂପୀକୁ ଡାକି କହିଲେ—ତୁମେ ସାଧୁବେଶ ଧରି ଅମୁକ ରାଜାଙ୍କ ପାଖକୁ ଯାଅ। ତୁମ ସାଥିରେ ସେ ଯେପରି ବ୍ୟବହାର କରିବେ, ସବୁ ଆସି ମୋତେ କହିବ। ବହୁରୂପୀ ମଧ୍ୟ ବଡ଼ ଚତୁର। ସେ ସାଧୁବେଶ ଧରି ସେଠାକୁ ଯିବାକୁ ବାହାରିଲା। ଅମୁକ ରାସ୍ତାରେ ସାଧୁ ଆସୁଛନ୍ତି ବୋଲି ଶୁଣିବାକୁ ପାଇବାମାତ୍ରେ ରାଜା ସେଠାକୁ ଗଲେ ଓ ଅତ୍ୟନ୍ତ ଆଦର-ସତ୍କାର କରି ତାଙ୍କୁ ମହଲକୁ ପାଛୋଟି ଆଣିଲେ; ନିଜ ହାତରେ ତାଙ୍କର ଖୁବ୍ ସେବା କଲେ।

ଦିନେ ରାଜା ସେହି ସାଧୁଙ୍କୁ କହିଲେ—ବାବା! କିଛି ଉପଦେଶ ଶୁଣାନ୍ତୁ। ସାଧୁ କହିଲେ—''ରାଜନ୍! ତୁମକୁ ଏତେ ଧନ ମିଳିଛି, ଏତେ ରାଜ୍ୟ ମିଳିଛି, ତେଣୁ ତୁମେ ବଡ଼ ଭାଗ୍ୟଶାଳୀ। ତୁମର ଏତେ ସୈନ୍ୟସାମନ୍ତ ଅଛନ୍ତି। ସ୍ତ୍ରୀ, ପୁତ୍ର, ଭୃତ୍ୟ ପ୍ରଭୃତି ସମସ୍ତେ ତୁମର ଅନୁକୂଳ। ତୁମ ଉପରେ ଭଗବାନଙ୍କର ବହୁତ କୃପା।'' ସେହି ସାଧୁ ଏହିଭଳି ଅନେକ କଥା

କହିଲେ । ରାଜା ନିରବ ହୋଇ ସବୁ ଶୁଣୁ ଥାଆନ୍ତି । ଦୁଇ ତିନି ଦିନ ରହିବା ପରେ ବହୁରୂପଧାରୀ ସେହି ସାଧୁ କହିଲେ—"ରାଜନ୍! ଏବେ ମୁଁ ଯିବାକୁ ଚାହୁଁଛି ।" ରାଜା କହିଲେ—"ବାବା! ଆପଣଙ୍କର ଯେମିତି ଇଚ୍ଛା ।" ରାଜା ତାଙ୍କ ଆଗରେ ଭଣ୍ଡାର ଖୋଲି ଦେଇ କହିଲେ—"ଆପଣ ସୁନା, ରୁପା, ମୋତି, ମାଣିକ, ଟଙ୍କାପଇସା ଯାହା କିଛି ନେବାକୁ ଚାହାନ୍ତି, ନିଅନ୍ତୁ ।" ସାଧୁଜଣକ ଭଲ ଭଲ ଜିନିଷ ଆଣି ଓଟ ଉପରେ ଲଦିଲେ । ସେ ଯିବାକୁ ବାହାରିବାରୁ ରାଜା ତାଙ୍କୁ କହିଲେ—"ଆଜ୍ଞା! ଏସବୁ ତ ଆପଣ ନିଜ ଇଚ୍ଛାରେ ନେଇଛନ୍ତି, ମୁଁ ନିଜ ତରଫରୁ ଆପଣଙ୍କୁ ଗୋଟିଏ ରୁପାବାକ୍ସ ଦେବାକୁ ଇଚ୍ଛା କରୁଛି ।" ରାଜା ଗୋଟିଏ ରୁପାବାକ୍ସ ଉପରେ ଝିଲିମିଲି ରେଶମ କପଡ଼ା ଗୁଡ଼ାଇ ତାଙ୍କୁ ଦେଲେ ଓ କହିଲେ, "ଏହା ମୋ ତରଫରୁ ଆପଣଙ୍କ ପାଇଁ ଉପହାର ।" ସାଧୁ ବେଶଧାରୀ ବହୁରୂପୀ ବାକ୍ସଟିକୁ ନେଇ ସେଠାରୁ ଚାଲିଗଲା ।

ବହୁରୂପୀ ତା'ନିଜ ରାଜାଙ୍କ ପାଖରେ ପହଞ୍ଚିଲା । କ'ଣ କ'ଣ ଆଣିଛ ବୋଲି ରାଜା ପଚାରିଲେ । ସେ କହିଲା—"ଲକ୍ଷ ଲକ୍ଷ, କୋଟି କୋଟି ଟଙ୍କାର ଧନ ଆଣିଛି ।" ରାଜା ବୁଝିଲେ ଯେ, ପଡ଼ୋଶୀ ଦେଶର ରାଜା ବଡ଼ ମୂର୍ଖ; ସାଧୁଙ୍କୁ ଚିହ୍ନି ଜାଣିନି! ସେହି ବହୁରୂପୀ କହିଲା—"ରାଜା ତାଙ୍କ ଆଡୁ ଉପହାରସ୍ୱରୂପ ମୋତେ ଗୋଟିଏ ରୁପାବାକ୍ସ ଦେଇଛନ୍ତି ।" ରାଜା ବାକ୍ସଟିକୁ ଆଣି ତାଙ୍କୁ ଦେଖାଇବା ପାଇଁ କହିଲେ । ବହୁରୂପୀ ବାକ୍ସଟିକୁ ନେଇ ରାଜାଙ୍କ ଆଗରେ ରଖିଦେଲା ଓ ତାଙ୍କୁ ଚାବି ଧରାଇ ଦେଲା । ରାଜା ଖୋଲି ଦେଖିଲେ ଯେ, ଗୋଟିଏ ରୁପା ବାକ୍ସ, ତା'ଭିତରେ ଆଉ ଗୋଟିଏ ରୁପା ବାକ୍ସ, ତା'ଭିତରେ ଆହୁରି ଗୋଟିଏ ରୁପା ବାକ୍ସ ରହିଛି । ଗୋଟିକ ପରେ ଗୋଟିଏ ଖୋଲି ଦେଖିଲେ । ଭିତର ବାକ୍ସଟିରେ ଗୋଟିଏ କାଣି କଉଡ଼ି ଥିବାର ଦେଖିଲେ । ଏହାର ଅର୍ଥ କ'ଣ ହୋଇ ପାରିବ ବୋଲି ରାଜା ଭାବିଲେ । ତା'ପରେ ସେ ବୁଝି ପାରିଲେ ଯେ, ରାଜା ମୂର୍ଖ ନୁହେଁ, ବଡ଼ ବୁଦ୍ଧିମାନ୍ । ସାଧୁବେଶ ପ୍ରତି ତାଙ୍କର ନିଷ୍ଠା ଆଦରଣୀୟ । ରାଜା ବହୁରୂପୀକୁ ପଚାରିଲେ—"ତୁମ ଦୁହିଙ୍କ ମଧ୍ୟରେ

କି ବାର୍ତ୍ତାଳାପ ହେଲା; ସବୁ କଥା କୁହ ।'' ସେ କହିଲା—''ଦିନେ ରାଜା ମୋତେ କିଛି ଉପଦେଶ ଶୁଣାଇବାକୁ କହିଲେ । ମୁଁ ତାଙ୍କୁ କହିଲି ଯେ ତୁମେ ବଡ଼ ସୌଭାଗ୍ୟଶାଳୀ । ତୁମର ରାଜ୍ୟ ଅଛି, ଧନସମ୍ପତ୍ତି ଅଛି, ସ୍ତ୍ରୀ, ପୁତ୍ର ଆଦି ସମସ୍ତେ ତୁମର ଅନୁକୂଳ, ତେଣୁ ଭଗବାନ ତୁମ ଉପରେ ବହୁତ କୃପା କରିଛନ୍ତି ।'' ଏହା ଶୁଣି ରାଜା ସବୁ କଥା ବୁଝିଗଲେ । ତିନୋଟି ବାକ୍ସ ସ୍ଥୂଳଶରୀର, ସୂକ୍ଷ୍ମଶରୀର ଓ କାରଣଶରୀର ନାମକ ତିନି ଶରୀରକୁ ବୁଝାଇଲା । ତାହା ଭିତରେ କ'ଣ ଅଛି! ଭିତରେ କାଣି କଉଡ଼ି ହିଁ ରହିଛି ଅର୍ଥାତ୍ କିଛି ନାହିଁ । ବାହ୍ୟ ବେଶଭୂଷା ବଡ଼ ସୁନ୍ଦର, ବାହାରେ ଦେଖିବାକୁ ଭଲ, କିନ୍ତୁ ଭିତରେ କିଛି ନାହିଁ । 'ତୁମ ଉପରେ ଭଗବାନଙ୍କର ବହୁତ କୃପା' ବୋଲି ଯାହା କହିଲ, ତାହା କାଣି କଉଡ଼ି । ଏହା କେଉଁ କୃପାରେ ବା ଗଣା । କୃପା ତ ସେତେବେଳେ ହେଲା ବୋଲି ଧରାଯିବ, ଯେତେବେଳେ ଆମେ ଭଗବାନଙ୍କ ପ୍ରତି ଆକୃଷ୍ଟ ହୋଇଯିବା; ତାଙ୍କ ଭଜନରେ ମଜ୍ଜି ରହିବା ।



## ୨୧. ଭଗବାନ କାହାର ଦାସ?

ବୃନ୍ଦାବନରେ ଜଣେ ଭକ୍ତ ଥିଲେ । ତାଙ୍କୁ ବାଙ୍କବିହାରୀଙ୍କର ଦର୍ଶନ ହେଉ ନ ଥିଲା । ଲୋକେ କହୁଥାଆନ୍ତି—ଆରେ! ବାଙ୍କବିହାରୀ ପରା ଆଗରେ ଠିଆ ହୋଇଛନ୍ତି! କିନ୍ତୁ ସେ କହୁଥାଆନ୍ତି—"ଭାଇ! ତୁମେ କହିଲେ କ'ଣ ହେବ, ମୋତେ ତ ଦେଖାଯାଉ ନାହାନ୍ତି!" ଏହିପରି ତିନି ଦିନ ବିତିଗଲା, ହେଲେ ଦର୍ଶନ ମିଳୁ ନ ଥାଏ । ସେହି ଭକ୍ତ ଜଣକ ଭାବିଲେ—ଆଉ ବଞ୍ଚି ଲାଭ କ'ଣ? ସମସ୍ତଙ୍କୁ ଦର୍ଶନ ମିଳୁଛି, ମୋତେ ଦର୍ଶନ ମିଳୁ ନାହିଁ । ମୁଁ ବଡ଼ ପାପୀ, ତେଣୁ ଠାକୁରେ ମୋତେ ଦର୍ଶନ ଦେଉ ନାହାନ୍ତି । ଏପରି ବଞ୍ଚିବା ଅପେକ୍ଷା ଯମୁନାରେ ଡେଇଁ ମରିଯିବା ଭଲ । ଏପରି ବିଚାର କରି ରାତିରେ ସେ ଯମୁନାକୁ ଯିବା ପାଇଁ ବାହାରିଲେ । ଯମୁନା କୂଳରେ ଜଣେ କୁଷ୍ଠରୋଗୀ ଶୋଇଥିଲା । ଭଗବାନ ତାକୁ ସ୍ୱପ୍ନରେ କହିଲେ—"ବର୍ତ୍ତମାନ ଏବାଟେ ଯେଉଁ ଲୋକଟି ଆସିବ, ତୁ ତା'ର ଗୋଡ଼ ଧରି ପକାଇବୁ । ତା'କୃପାରୁ ତୋର କୁଷ୍ଠରୋଗ ଭଲ ହୋଇଯିବ ।" କୁଷ୍ଠରୋଗୀଟି ନିଦରୁ ଉଠି ବସି ପଡ଼ିଲା । ଭକ୍ତ ଜଣକ ସେହି ବାଟ ଦେଇ ଗଲାବେଳକୁ କୁଷ୍ଠରୋଗୀଟି ତାଙ୍କ ଗୋଡ଼କୁ ଜାବୁଡ଼ି ଧରିଲା ଏବଂ କୁଷ୍ଠରୋଗ ଦୂର କରିଦିଅ ବୋଲି କହିଲା । ଭକ୍ତ ଜଣକ କହିଲେ—"ଆରେ ଭାଇ! ମୁଁ ବଡ଼ ପାପୀ, ଠାକୁରେ ମୋତେ ଦର୍ଶନ ଦେଉ ନାହାନ୍ତି!" ଯେତେପ୍ରକାରେ କହିଲେ ବି ସେ ଛାଡ଼ିଲା ନାହିଁ । ଶେଷକୁ କୁଷ୍ଠରୋଗୀଟି କହିଲା—"ମୋର କୁଷ୍ଠରୋଗ ଦୂର ହୋଇଯାଉ ବୋଲି ତୁମେ ଖାଲି କହିଦିଅ ।" ଏପରି ଯୋଗ୍ୟତା ତାଙ୍କର ନାହିଁ ବୋଲି ଭକ୍ତ ଜଣକ କହିଲେ । କୁଷ୍ଠରୋଗୀ ବେଶୀ ବାଧ୍ୟ କରିବାରୁ ଭକ୍ତ କହିଦେଲେ—"ହଉ, ତୋର ରୋଗ ଭଲ ହୋଇଯାଉ" । ଏପରି କହିବାମାତ୍ରେ ଆଖିପିଛୁଳାକେ ତା'ର କୁଷ୍ଠରୋଗ ଭଲ ହୋଇଗଲା । ତା'ପରେ ସେ ସ୍ୱପ୍ନର ସବୁ କଥା କହିଲା । ଏହା ଶୁଣି ଭକ୍ତ ଜଣକ ସେଦିନ ମରିବେ ନାହିଁ ବୋଲି ସ୍ଥିର

କରି ଫେରି ଆସିଲେ। ଫେରି ଆସିବାରୁ ଭଗବାନଙ୍କର ଦର୍ଶନ ମିଳିଲା। ସେ ଠାକୁରଙ୍କୁ ପଚାରିଲେ—"ପ୍ରଭୁ! ଆଗରୁ ତୁମେ ଦର୍ଶନ ଦେଉ ନ ଥିଲ କାହିଁକି?" ଠାକୁର କହିଲେ—"ତୁ ଜୀବନସାରା ମୋତେ କିଛି ମାଗି ନ ଥିଲୁ, ମୋ'ଠାରୁ କିଛି ପାଇବାକୁ ଇଚ୍ଛା କରି ନ ଥିଲୁ, ତେଣୁ ମୁଁ ତୋତେ ମୁହଁ ଦେଖାଇବାର ଯୋଗ୍ୟ ହୋଇ ନ ଥିଲି! ଏବେ ତୁ ତା'ର କୁଷ୍ଠରୋଗ ଭଲ ହୋଇଯାଉ ବୋଲି କହିବାରୁ, ମୁଁ ତୋ ଆଗରେ ମୁହଁ ଦେଖାଇବାର ଯୋଗ୍ୟ ହେଲି! ଏହାର ଅର୍ଥ ହେଲା, ଯିଏ ଭଗବାନଙ୍କ ଠାରୁ କିଛି ଚାହେଁ ନାହିଁ, ଭଗବାନ ତା'ର ଦାସ ହୋଇଯାଆନ୍ତି।

ହନୁମାନ ଭଗବାନଙ୍କ କାର୍ଯ୍ୟ କରିବାରୁ ଭଗବାନ ତାଙ୍କର ଋଣୀ ହୋଇଗଲେ—**'ସୁନୁ ସୁତ ତୋହି ଉରିନ ମୈଁ ନାହୀଁ** (ମାନସ, ସୁନ୍ଦର. ୩୨।୪)। ସେବା କରୁଥିବା ବ୍ୟକ୍ତି ବଡ଼ ହୋଇଯାଏ ଏବଂ ସେବା କରାଉଥିବା ବ୍ୟକ୍ତି ଛୋଟ ହୋଇଯାଏ। କିନ୍ତୁ ଭଗବାନଙ୍କୁ ଓ ତାଙ୍କର ପ୍ରେମୀ ଭକ୍ତଙ୍କୁ ଛୋଟ ହେବାରେ ଲାଜ ମାଡ଼େ ନାହିଁ। ସେ ଜାଣିଶୁଣି ଛୋଟ ହୁଅନ୍ତି। ଛୋଟ ହୋଇଥିଲେ ମଧ୍ୟ ସେମାନେ କଦାପି ଛୋଟ ନୁହନ୍ତି ଏବଂ ବଡ଼ପଣିଆର ଅଭିମାନ ସେମାନଙ୍କ ଠାରେ ନ ଥାଏ।



# ୨୨. ଅପକାର ବଦଳରେ ଉପକାର

ଜୟଦେବ ନାମରେ ଜଣେ ବ୍ରାହ୍ମଣ ଅତି ଉଚ୍ଚକୋଟିର ସନ୍ଥ ଥିଲେ । ଜଣେ ରାଜା ତାଙ୍କୁ ବହୁତ ଭକ୍ତି କରୁଥିଲେ ଏବଂ ନିଜ ତରଫରୁ ତାଙ୍କ ପାଇଁ ସବୁ ବ୍ୟବସ୍ଥା କରୁଥିଲେ । ଜୟଦେବ ଅତ୍ୟନ୍ତ ତ୍ୟାଗୀ ବ୍ରାହ୍ମଣ ଥିଲେ ଏବଂ ଗୃହସ୍ଥାଶ୍ରମରେ ଥାଇ ସୁଦ୍ଧା ତାଙ୍କ ମନରେ କାହାଠାରୁ ଧନାଦି ପାଇବାର ଆକାଂକ୍ଷା ନ ଥିଲା । ତାଙ୍କ ସ୍ତ୍ରୀ ଥିଲେ ଅସାଧାରଣ ପତିବ୍ରତା; କାରଣ ଜୟଦେବ ବିବାହ କରିବା ପାଇଁ ଗ୍ରହିଁ ନ ଥିଲେ, ଭଗବାନ ହିଁ ତାଙ୍କର ବିବାହ କରାଇଥିଲେ । ଦିନକର କଥା । ଜୟଦେବଙ୍କୁ ରାଜା ଅଜସ୍ର ଧନ ଦେଲେ, ଲକ୍ଷ ଲକ୍ଷ ଟଙ୍କାର ରତ୍ନ ଦେଲେ । ସେ ସବୁକୁ ନେଇ ସେ ତାଙ୍କ ଘରକୁ ଯାଉଥିଲେ । ବାଟରେ ଜଙ୍ଗଲ ପଡ଼ିଲା । ଡାକୁମାନଙ୍କୁ ଏ ଖବର ମିଳିବାରୁ ସେମାନେ ଜୟଦେବଙ୍କୁ ଜଙ୍ଗଲରେ ଘେରିଯାଇ ତାଙ୍କର ସବୁଯାକ ଧନ ନେଇଗଲେ । ତା'ପରେ ଡାକୁମାନେ ଭାବିଲେ— "ଏ ହେଉଛି ରାଜାଙ୍କର ଗୁରୁ; ଯଦି ଇଏ ବଞ୍ଚି ରହିବ, ଆମକୁ ବନ୍ଧାଇ ଦେବ ।" ଏପରି ଭାବି ସେମାନେ ଜୟଦେବଙ୍କର ହାତ ଦୁଇଟିକୁ କାଟିଦେଇ ଗୋଟିଏ ଶୁଖିଲା କୂଅରେ ପକାଇ ଦେଲେ । ଜୟଦେବ କୂଅ ଭିତରେ ପଡ଼ିଥାଆନ୍ତି । ଦୁଇ ତିନି ଦିନ ପରେ ରାଜା ଭ୍ରମଣ ଉଦ୍ଦେଶ୍ୟରେ ଜଙ୍ଗଲକୁ ଆସିଲେ । ରାଜକର୍ମଗ୍ରରୀମାନେ ପାଣି କାଢ଼ିବା ପାଇଁ କୂଅରେ ଢାଳ ପକାଇବାରୁ ଭିତରେ ଥାଇ ଜୟଦେବ କହିଲେ—"ଭାଇ! ଏ କୂଅରେ ପାଣି ନାହିଁ, ଶୁଖିଲା କୂଅ, ଲକ୍ଷ୍ୟ ରଖିଥିବ, ମୋ ମୁଣ୍ଡରେ ଢାଳ ବାଜିବ ।" ସେମାନେ ସ୍ୱରରୁ ଏହା ବ୍ରାହ୍ମଣ ଜୟଦେବଙ୍କର ସ୍ୱର ବୋଲି ଜାଣି ପାରିଲେ! ହେଲେ ସେ ଏଠାକୁ ଆସିଲେ କିପରି! ସେମାନେ ରାଜାଙ୍କ ଆଗରେ କହିଲେ—"ମହାରାଜ! ଜୟଦେବ ଗୋସେଇଁ କୂଅରେ ପଡ଼ିଛନ୍ତି ।" ରାଜା ସେଠାକୁ ଗଲେ । ଦଉଡ଼ି ପକାଇ ତାଙ୍କୁ କୂଅ ଭିତରୁ ବାହାର କରି ଦେଖନ୍ତି ତ ତାଙ୍କ ହାତ ଦୁଇଟି କଟିଯାଇଛି । ତାଙ୍କୁ ଏହାର ରହସ୍ୟ ପଗ୍ରରିବାରୁ ସେ କହିଲେ—"ଭାଇ! ମୋର ଯେପରି ପ୍ରାରବ୍ଧ ଥିଲା,

ସେପରି ହିଁ ହେଲା ।'' ପ୍ରକୃତ ଘଟଣା କ'ଣ, ଏପରି କିଏ କଲା ବୋଲି ଯେତେ ବାଧ୍ୟ କରି ପଚରାଗଲେ ସୁଦ୍ଧା ସେ କିଛି କହିଲେ ନାହିଁ, କେବଳ ଏହା ତାଙ୍କ କର୍ମର ଫଳ ବୋଲି କହିଲେ । ରାଜା ତାଙ୍କୁ ଘରକୁ ନେଇ ଆସିଲେ । ବ୍ୟାଣ୍ଡେଜ କରିବା, ଖିଆପିଆ କରାଇବା ପ୍ରଭୃତି ସମସ୍ତ ସେବା ରାଜା କରାଇଲେ ।

ଦିନକର କଥା । ଯେଉଁମାନେ ଜୟଦେବଙ୍କର ହାତ କାଟି ଦେଇଥିଲେ, ସେହି ଗ୍ରିଜଣଯାକ ଡାକୁ ସାଧୁ ବେଶରେ କୌଣସି ସ୍ଥାନକୁ ଯାଉଥିଲେ । ସେମାନଙ୍କୁ ରାଜା ଓ ଜୟଦେବ ଉଭୟେ ଦେଖିଲେ । ଜୟଦେବ ଚିହ୍ନି ପାରିଲେ ଯେ, ସେମାନେ ସେହି ଡାକୁ । ସେ ରାଜାଙ୍କୁ କହିଲେ—''ରାଜନ୍! ଆପଣ ମୋତେ ଧନ ନେବା ପାଇଁ ବେଶୀ ବାଧ୍ୟ କରୁଛନ୍ତି । ଯଦି ଧନ ଦେବାର ଅଛି; ଏହି ଗ୍ରିଜଣଙ୍କୁ ଦିଅନ୍ତୁ; ଏମାନେ ମୋର ମିତ୍ର । ମୋତେ ଧନ ଦିଅନ୍ତୁ ଅଥବା ମୋ ମିତ୍ରଙ୍କୁ ଧନ ଦିଅନ୍ତୁ, ଏକା କଥା । ରାଜାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା ଯେ ଜୟଦେବ ତ କେବେ 'ଦିଅନ୍ତୁ' ବୋଲି କହନ୍ତି ନାହିଁ, କିନ୍ତୁ ଆଜି ଏପରି କହିଲେ ଯେ! ରାଜା ସେହି ଗ୍ରିଜଣଙ୍କୁ ଡକାଇଲେ । ସେମାନେ ଆସି ଦେଖନ୍ତି ତ, ହାତ କଟା ହୋଇଥିବା ଜୟଦେବ ସେଠାରେ ବସିଛନ୍ତି । ତାଙ୍କୁ ଦେଖି ସେମାନଙ୍କର ପିଳେହି ପାଣି ହୋଇଗଲା । ସେମାନେ ଭାବିଲେ, ନିଶ୍ଚୟ କିଛି ବିପଦ ଆସିବ! ଏବେ ଇଏ ଆମକୁ ରାଜାଙ୍କ ହାତରେ ଅବଶ୍ୟ ମରାଇବ । ରାଜା ସେମାନଙ୍କ ସହିତ ଆଦରର ସହିତ ଭଦ୍ର ବ୍ୟବହାର କଲେ ଏବଂ ସେମାନଙ୍କୁ କୋଷାଗାରକୁ ନେଇ ଯଥେଷ୍ଟ ସୁନା, ରୁପା, ମୋହର ଇତ୍ୟାଦି ଦେଲେ । ଲୋଭରେ ତ ସେମାନେ ବେଶୀ ଧନ ଗଣ୍ଠିଲି କଲେ, କିନ୍ତୁ ଓଜନ ଅଧିକ ହୋଇଗଲା । ଏବେ କ'ଣ କରାଯିବ, କେମିତି ନେବେ । ତାହା ଦେଖି ରାଜା ନିଜର କେତେ ଜଣ ଲୋକଙ୍କୁ ଆଦେଶ ଦେଲେ ଯେ, ସେମାନଙ୍କୁ ସେମାନଙ୍କ ଘରେ ପହଞ୍ଚାଇ ଦେଇ ଆସ । ସବୁ ଧନ ଗାଡ଼ିରେ ରଖି ରାଜା ସିପାହିମାନଙ୍କୁ ସେମାନଙ୍କ ସଙ୍ଗରେ ପଠାଇଲେ ।

ସେମାନେ ଯାଉଥିଲେ। ବାଟରେ ଯିବାବେଳେ ସିପାହିମାନଙ୍କ ମୁଖ୍ୟ ମନେ ମନେ ଭାବିଲା ଯେ—ବ୍ରାହ୍ମଣ ଜୟଦେବ ତ କେବେ କାହାକୁ କିଛି ଦେବା ପାଇଁ କହୁ ନ ଥିଲେ, ପୁଣି ଆଜି କେମିତି କହିଲେ? ନିଶ୍ଚୟ ଏଥିରେ କିଛି ରହସ୍ୟ ଅଛି! ମୁଖ୍ୟ ଜଣକ ସେମାନଙ୍କୁ ପଚାରିଲା—'ଆଜ୍ଞା! ଆପଣମାନେ ଏ ବ୍ରାହ୍ମଣଙ୍କର କି ଉପକାର କରିଛନ୍ତି, ସତ କହନ୍ତୁ। ଆଜି ମୁଁ ତାଙ୍କ ସ୍ୱଭାବର ବିରୁଦ୍ଧ କଥା ଦେଖିଲି। ଏତେ ବର୍ଷ ହେଲାଣି, କିନ୍ତୁ ସେ କେବେ କାହାକୁ 'ଆପଣ ଦିଅନ୍ତୁ' ବୋଲି କହନ୍ତି ନାହିଁ; ମାତ୍ର ଆଜି ସେ ଆପଣମାନଙ୍କ ପାଇଁ ଏପରି କହିଲେ, ତେବେ ବାସ୍ତବରେ କଥା କ'ଣ?'' ସେମାନେ ପରସ୍ପରକୁ ଚାହାଁଚାହିଁ ହେଲେ ଓ କହିଲେ—''ବ୍ରାହ୍ମଣ ଦିନେ ମୃତ୍ୟୁ ମୁଖରେ ପଡ଼ିଥିଲେ, ଆମେ ତାଙ୍କୁ ସେଥିରୁ ରକ୍ଷା କରିଦେଲୁ। ତାଙ୍କର କେବଳ ହାତ କଟିଗଲା, ନ ହେଲେ ମୁଣ୍ଡ କଟି ଯାଇ ଥାଆନ୍ତା। ସେ ସେହି ଦିନର ଉପକାର ପରିଶୋଧ କରୁଛନ୍ତି।'' ସେମାନଙ୍କର ଏ କଥା ପୃଥିବୀ ସହି ପାରିଲା ନାହିଁ। ପୃଥିବୀ ଫାଟିଗଲା ଏବଂ ସେମାନେ ମାଟି ଭିତରେ ପଶିଗଲେ! ସିପାହିମାନେ ଧନ କେଉଁଠି ରଖିବେ, କ'ଣ କରିବେ? ବଡ଼ ଅସୁବିଧାରେ ପଡ଼ିଲେ। ସେମାନେ ସେଠାରୁ ରାଜାଙ୍କ ପାଖକୁ ଲେଉଟି ଆସି ସବୁ କଥା କହିଲେ। ସେମାନଙ୍କ କଥା ଶୁଣି ଜୟଦେବ କାନ୍ଦିବାକୁ ଲାଗିଲେ! କାନ୍ଦି କାନ୍ଦି ଲୁହ ପୋଛିବା ପାଇଁ ଉଦ୍ୟତ ହେଲା ବେଳକୁ ତାଙ୍କର ହାତ ଦୁଇଟି କଅଁଳି ଆସିଲା। ଏହା ଦେଖି ରାଜା ଆଶ୍ଚର୍ଯ୍ୟାନ୍ୱିତ ହେଲେ ଯେ ବାସ୍ତବରେ ଏ କି ଲୀଳା! ହାତ କଅଁଳି ଆସିଲା କିପରି? ରାଜା ଭାବିଲେ ବୋଧହୁଏ ସେମାନେ ବ୍ରାହ୍ମଣଙ୍କର କୌଣସି ଘନିଷ୍ଠ ମିତ୍ର ଥିଲେ, ତେଣୁ ସେମାନଙ୍କ ମରଣ ଯୋଗୁଁ ଇଏ କାନ୍ଦୁଛନ୍ତି। ରାଜା ତାଙ୍କୁ ପଚାରିଲେ—''ଆଜ୍ଞା! ଘଟଣା କ'ଣ, କହନ୍ତୁ ତ? ଆମ୍ଭମାନଙ୍କୁ ତ ଆପଣ ଶୋକ ଓ ଚିନ୍ତା ନ କରିବା ପାଇଁ ଉପଦେଶ ଦେଉଛନ୍ତି, ପୁଣି ମିତ୍ରଙ୍କ ମରଣରେ ଆପଣ ନିଜେ କାନ୍ଦୁଛନ୍ତି ଓ ଶୋକ କରୁଛନ୍ତି!'' ସେ କହିଲେ—''ରାଜନ୍! ଏମାନେ

ହିଁ ମୋ'ଠାରୁ ଧନ ଛଡ଼ାଇ ନେଇଥିଲେ ଓ ମୋର ହାତ କାଟି ଦେଇଥିଲେ।'' ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ—''ଆଜ୍ଞା! ଆପଣଙ୍କ ହାତ କାଟିଥିବା ଲୋକଙ୍କୁ ଆପଣ ମିତ୍ର ବୋଲି କହୁଛନ୍ତି!'' ଜୟଦେବ କହିଲେ—''ଦେଖନ୍ତୁ ରାଜନ୍! ବଚନ ଦ୍ୱାରା ଉପଦେଶ ଦିଆଯାଏ ଏବଂ କ୍ରିୟା ଦ୍ୱାରା ଉପଦେଶ ଦିଆଯାଏ। କ୍ରିୟା ଦ୍ୱାରା ଉପଦେଶ ଦେଉଥିବା ବ୍ୟକ୍ତି ଶ୍ରେଷ୍ଠ। ମୁଁ ଯେଉଁ ହାତରେ ଆପଣଙ୍କ ଠାରୁ ଧନରତ୍ନ ନେଇଥିଲି, ସେହି ହାତ ଦୁଇଟିକୁ କାଟିଦେବା ଉଚିତ ଥିଲା। ଏ କାମଟିକୁ ସେମାନେ କରିଦେଲେ ଏବଂ ସବୁଯାକ ଧନ ମଧ୍ୟ ନେଇଗଲେ। ଏଣୁ ସେମାନେ ମୋର ଉପକାର କଲେ, ମୋ ଉପରେ କୃପା କଲେ, ଯାହାଫଳରେ ମୋର ପାପ କ୍ଷୟ ହେଲା। ତେଣୁ ସେମାନେ ହେଲେ ମୋର ମିତ୍ର। ମୁଁ ଏଥିପାଇଁ କାନ୍ଦିଲି ଯେ, ଲୋକେ ମୋତେ ସନ୍ଥ କହୁଛନ୍ତି, ଭଲ ଲୋକ କହୁଛନ୍ତି, ପଣ୍ଡିତ କହୁଛନ୍ତି, ଧର୍ମାତ୍ମା କହୁଛନ୍ତି, ଏପଟେ ମୋ ଯୋଗୁଁ ଏମାନଙ୍କର ମୃତ୍ୟୁ ହେଲା! ତେଣୁ ମୁଁ କାନ୍ଦି କାନ୍ଦି ଭଗବାନଙ୍କ ନିକଟରେ ପ୍ରାର୍ଥନା କଲି, ''ହେ ପ୍ରଭୁ! ଲୋକେ ମୋତେ ଭଲ ଲୋକ କହି ବଡ଼ ଭୁଲ୍ କରୁଛନ୍ତି। ମୋ ଯୋଗୁଁ ଆଜି ଗ୍ରିରିଜଣଙ୍କର ମୃତ୍ୟୁ ହେଲା, ତେବେ ମୁଁ ଭଲ ହେଲି କିପରି? ମୁଁ ବଡ଼ ଦୁଷ୍ଟ। ହେ ପ୍ରଭୁ! ମୋ ଦୋଷ କ୍ଷମା କରନ୍ତୁ। ଏବେ ମୁଁ କ'ଣ କରିବି, ମୋ ହାତରେ କିଛି ନାହିଁ; ତେଣୁ ମୁଁ ପ୍ରାର୍ଥନା ବ୍ୟତୀତ ଆଉ କିଛି କରି ପାରୁ ନାହିଁ।'' ଆଶ୍ଚର୍ଯ୍ୟ ହୋଇ ରାଜା ପଗ୍ରିରିଲେ— ''ଆଜ୍ଞା! ଆପଣଙ୍କ ଯୋଗୁଁ ଗ୍ରିରିଜଣ ମରିଗଲେ ବୋଲି ଆପଣ ନିଜକୁ ଯଦି ଅପରାଧୀ ମନେ କରୁଛନ୍ତି, ତେବେ ଆପଣଙ୍କର ହାତ କଅଁଳି ଆସିଲା କିପରି?'' ସେ କହିଲେ—''ଭଗବାନ ତାଙ୍କ ଭକ୍ତଙ୍କର ଅପରାଧ, ପାପ ଓ ଅବଗୁଣକୁ ଦେଖନ୍ତି ନାହିଁ।'' ରାଜା କହିଲେ— ''ଆଛା! ସେମାନେ ଆପଣଙ୍କୁ ଏତେ ଦୁଃଖ ଦେବା ସତ୍ତ୍ୱେ ଆପଣ ସେମାନଙ୍କୁ ଧନ ଦେଲେ କାହିଁକି?'' ସେ କହିଲେ—''ଦେଖନ୍ତୁ ରାଜନ୍! ସେମାନଙ୍କର ଧନ ପ୍ରତି ଲୋଭ ଥିଲା; ଏବଂ ଲୋଭବଶତଃ

ସେମାନେ ଆଉ କାହାର ହାତ କାଟି ଦେଇଥାଆନ୍ତେ। ତେଣୁ ମୁଁ ବିଗ୍ଭର କଲି, ଆପଣ ଯଦି ଧନ ଦେବାକୁ ଗ୍ଭହାନ୍ତି, ତେବେ ସେମାନଙ୍କୁ ଦେଲେ ଅନ୍ୟ କୌଣସି ନିର୍ଦୋଷ ବ୍ୟକ୍ତିକୁ ମାରିବା ପାଇଁ ସେମାନଙ୍କର ଦରକାର ପଡ଼ିବ ନାହିଁ। ମୁଁ ତ ଜଣେ ଦୋଷୀ ଥିଲି, ତେଣୁ ସେମାନେ ମୋତେ ଦୁଃଖ ଦେଲେ। କିନ୍ତୁ ସେମାନେ କୌଣସି ନିର୍ଦୋଷ ବ୍ୟକ୍ତିକୁ ଦୁଃଖ ନ ଦେବା ପାଇଁ, ସେମାନଙ୍କୁ ମନବୋଧ କରି ଧନ ଦିଅନ୍ତୁ ବୋଲି ଆପଣଙ୍କୁ କହିଲି।'' ଏହା ଶୁଣି ରାଜାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା! ସେ କହିଲେ—''ଆପଣ ମୋତେ ଆଗରୁ ଏ କଥା କହିଲେ ନାହିଁ କାହିଁକି?'' ସେ କହିଲେ—''ମହାରାଜ! ମୁଁ ଆଗରୁ କହିଦେଇଥିଲେ ଆପଣ ସେମାନଙ୍କୁ ଦଣ୍ଡ ଦେଇଥାଆନ୍ତେ। ମୁଁ ସେମାନଙ୍କୁ ଦଣ୍ଡ ଦେବାକୁ ଗ୍ଭହୁଁ ନ ଥିଲି। ବରଂ ସେମାନେ ମୋର ପାପ ନଷ୍ଟ କଲେ ଏବଂ ମୋତେ କ୍ରିୟାତ୍ମକ ଶିକ୍ଷା ଦେଲେ, ସେଥିପାଇଁ ମୁଁ ସେମାନଙ୍କୁ ସାହାଯ୍ୟ କରିବାକୁ ଗ୍ଭହୁଁଥିଲି। ମୁଁ ମୋ ପାପର ଫଳ ଭୋଗ କଲି, ତେଣୁ ମୋର ହାତ କଟିଗଲା। ନ ହେଲେ ଭଗବାନଙ୍କ ଦରବାରରେ, ଭଗବାନ ଆଉ ଆଉ କେହି କ'ଣ କାହାକୁ ଅନୁଚିତ ଦଣ୍ଡ ଦେଇ ପାରିବ? ଆଦୌ ସମ୍ଭବ ନୁହେଁ। ମୋ ପାପର ଫଳ ଭୋଗାଇ ମୋତେ ଶୁଦ୍ଧ କରିବାଟା ଥିଲା ସେମାନଙ୍କର ମୋ ପ୍ରତି ଉପକାର।

ଏ କଥାରୁ ପ୍ରମାଣିତ ହେଉଛି ଯେ, ଅନ୍ୟ କେହି ସୁଖ ବା ଦୁଃଖ ଦେଇ ପାରିବ ନାହିଁ; ଅନ୍ୟ କେହି ସୁଖ ବା ଦୁଃଖ ଦେଉଛି—ଏପରି ବୁଝିବା କୁବୁଦ୍ଧି—***'ସୁଖସ୍ୟ ଦୁଃଖସ୍ୟ ନ କୋଽପି ଦାତା ପରୋ ଦଦାତୀତି କୁବୁଦ୍ଧିରେଷା'*** (ଅଧ୍ୟାତ୍ମ. ୨ । ୬ । ୬)। ଦୁଃଖ ନିଜର ପ୍ରାରବ୍ଧରୁ ମିଳେ। ଅବଶ୍ୟ, ସେଥିରେ କେହି ନିମିତ୍ତ ହେଲେ ତା'ପ୍ରତି ଦୟା ଆସିବା ଉଚିତ ଯେ, ବିଚରା ଖାଲିଟାରେ ପାପରେ ଭାଗୀ ହେଉଛି!



# ୨୩. ଭାବଗ୍ରାହୀ ଜନାର୍ଦ୍ଦନ

ଗୃହସ୍ଥାଶ୍ରମରେ ଜଣେ ବଡ଼ ତ୍ୟାଗୀ ପଣ୍ଡିତ ଥିଲେ । ତ୍ୟାଗରେ କେବଳ ସାଧୁମାନଙ୍କର ଯେ ଅଧିକାର, ତା' ନୁହେଁ । ଗୃହସ୍ଥାଶ୍ରମରେ, ସାଧୁବେଶରେ ସବୁଥିରେ ତ୍ୟାଗ କରାଯାଇ ପାରିବ । ତ୍ୟାଗ କେବଳ ସାଧୁବେଶରେ ଥିଲେ ଯେ ହେବ, ତା'ନୁହେଁ । ପଣ୍ଡିତ ଜଣକ ଖୁବ୍ ବିଚାରବାନ୍ ଥିଲେ । ସେ ଭାଗବତ ପ୍ରବଚନ କରୁଥିଲେ । ଜଣେ ଧନୀ ଲୋକ ତାଙ୍କଠାରୁ ଦୀକ୍ଷା ନେଲା ଏବଂ କହିଲା—''ମହାଭାଗ! କୌଣସି ସେବା ଆଦେଶ କରନ୍ତୁ ।'' ଧନୀ ଲୋକ ଜଣକ ବାଧ୍ୟ କରି ବାରମ୍ବାର କହିବାରୁ ସେ କହିଲେ— **'ଅନ୍ନଦାନଂ ମହାଦାନମ୍'** । ଭଗବାନ ତୁମକୁ ଧନ ଦେଇଛନ୍ତି, ତେଣୁ କ୍ଷୁଧାର୍ତ୍ତମାନଙ୍କୁ ଅନ୍ନ ଦାନ କର । ଧନୀ ଲୋକଟି ଶ୍ରଦ୍ଧାଳୁ ଥିଲା । ସେ ଅନ୍ନଦାନ କରିବା ଆରମ୍ଭ କରିଦେଲା । ଏପରି କରି କରି କେତେ ଦିନ ବିତିଗଲା । ମନୁଷ୍ୟ ସାବଧାନ ନ ରହିଲେ ସବୁଥିରେ ଅଭିମାନ ହୋଇଯାଏ । ତା'ର ମଧ୍ୟ ଦାନ ଦେବାର ଅଭିମାନ ହୋଇଗଲା । ସେ ଭାବିଲା, ''ମୁଁ ଏତେ ଲୋକଙ୍କୁ ଅନ୍ନ ଦେଉଛି ।'' ଅଭିମାନ ହେବାରୁ ସେ ନିର୍ଦ୍ଦିଷ୍ଟ ସମୟରେ ଅନ୍ନ ଦେଉଥିଲା, କିନ୍ତୁ ଅନ୍ୟ ସମୟରେ କେହି ମାଗିବାକୁ ଆସିଲେ ସେ ତାକୁ ଖୁବ୍ ଧିକ୍କାର କରୁଥିଲା, ତିରସ୍କୃତ ଓ ଅପମାନିତ କରୁଥିଲା । କ୍ରୋଧରେ ଅତିଥିମାନଙ୍କୁ କହୁଥିଲା—''ସମସ୍ତେ କାଙ୍ଗାଳ ହୋଇଗଲ, ସମସ୍ତେ ମାଗିବାକୁ ଆସିଗଲ? ସମସ୍ତଙ୍କର ସ୍ୱଭାବ ଖରାପ ହୋଇଗଲାଣି ।'' ଏହିଭଳି କେତେ କ'ଣ କହି ଗାଳି ଦେଉଥିଲା ।

ପଣ୍ଡିତେ ଲୋକମାନଙ୍କୁ ଅନ୍ନକ୍ଷେତ୍ରର କାମ କିପରି ଚାଲିଛି ବୋଲି ପଚାରି ବୁଝିଲେ । ଲୋକେ କହିଲେ—''ଆଜ୍ଞା! ଅନ୍ନ ଦେଉଛି ସତ, କିନ୍ତୁ ବହୁତ ଅପମାନିତ କରୁଛି ଓ ଗାଳି ଦେଉଛି ।'' ଦିନେ ପଣ୍ଡିତେ ନିଜେ ରାତି ଅଧରେ ସେହି ଧନୀର ଘରକୁ ଗଲେ । କବାଟ ଠକ୍ ଠକ୍ କରି ଡାକିଲେ—''ବାବୁ! ଭିକାରୀକୁ କିଛି ଖାଇବାକୁ ମିଳୁ ।'' ଭିତରେ ଥାଇ ସେ କହିଲା—''ଯା, ଯା, ଏବେ ସମୟ ନୁହେଁ ।'' ପଣ୍ଡିତେ ପୁଣି କହିଲେ—''ବାବୁ! ଶାଗପଖାଳ ଯାହା ଅଛି କିଛି ହେଲେ ଖାଇବାକୁ ମିଳୁ, କାଲିର ବାସି ରୁଟି ହେଲେ ବି ଚଳିଯିବ । ଭୋକ ଦୂର କରିବା ପାଇଁ ଅଳ୍ପ କିଛି ମିଳୁ ।'' ଧନୀ ଲୋକଟି କହିଲା—''ଏବେ ହୋଇ

ପାରିବନି।'' ପଣ୍ଡିତେ ଜାଣିଶୁଣି ତାକୁ ବ୍ୟସ୍ତ କରାଇବା ପାଇଁ ବାରମ୍ବାର ଡାକୁଥାଆନ୍ତି। ବାରମ୍ବାର ଦେବା ପାଇଁ କହିବାରୁ ସେ ରାଗିଯାଇ ବଡ଼ ପାଟିରେ କହିଲା—''ଏଗୁଡ଼ାକ ପ୍ରାଣ ଖାଇ ଯାଉଛନ୍ତି, ରାତିରେ ବି ଟିକେ ଶୁଆଇ ବସାଇ ଦେଉ ନାହାନ୍ତି। ଥରେ କହିଲି ପରା ଏବେ ମିଳିବନି, ଯା' ଚାଲିଯା'।'' ପଣ୍ଡିତେ ପୁଣି କହିଲେ—''ବାବୁ! ଅଳ୍ପ କିଛି ଖାଇବାକୁ ମିଳୁ, ଭୋକ ଲାଗୁଛି।'' ଏଥର ଧନିକ ମୁଣ୍ଡକୁ ରାଗ ଉଠିଗଲା। ସେ ପାଟିକରି କହିଲା—''କେମିତିକା ଲୋକଟା ମ?'' କବାଟ ଖୋଲି ଦେଖିଲା ବେଳକୁ ପଣ୍ଡିତେ ନିଜେ ଠିଆ ହୋଇଛନ୍ତି। ତାଙ୍କୁ ଦେଖି କହିଲା—''ଆଜ୍ଞା! ଆପଣ କି?'' ପଣ୍ଡିତେ କହିଲେ—''ତୁ କ'ଣ କେବଳ ମୋତେ ହିଁ ଦେବୁ? ମୁଁ ମାଗିଲେ ହିଁ ଦେବୁ?'' ସେ କହିଲା—''ଆଜ୍ଞା! ମୁଁ ଆପଣଙ୍କୁ ଚିହ୍ନି ପାରି ନ ଥିଲି!'' ପଣ୍ଡିତେ କହିଲେ—''ଚିହ୍ନିବାର କ'ଣ ଅଛି? ଚିହ୍ନି ଯାଇଥିଲେ ତ ନିଶ୍ଚୟ ଦେଇ ଥାଆନ୍ତୁ। ଅନ୍ୟମାନଙ୍କୁ ତୁ ଏଇଭଳି ଅନ୍ନ ଦେଉଛୁ? ଏହା କ'ଣ ଦେବାରେ ଗଣା? ତୁ କେତେ ଲୋକଙ୍କୁ ଏପରି ଅପମାନିତ ଓ ତିରସ୍କୃତ ନ କରିଛୁ? ଏଥିରେ କେତେ କ୍ଷତି ହେଉଛି ଜାଣିଛୁ ତ?'' ଧନିକ କହିଲା—''ଆଉ ଏମିତି କରିବି ନାହିଁ।'' ସେହି ଦିନଠାରୁ କେହି ମାଗିବାକୁ ଆସିଲେ ଧନିକର ପଣ୍ଡିତ ମହାଶୟଙ୍କ କଥା ମନେପଡ଼େ। ଏଣୁ ସବୁ ସମୟରେ ସବୁ ବିଷୟରେ ଭଗବାନଙ୍କୁ ଦେଖନ୍ତୁ। ଭାବନ୍ତୁ ଯେ, ଗରିବ ବେଶ ଧରି ଭଗବାନ ଆସିଛନ୍ତି। କିଏ ଜାଣେ କେଉଁ ବେଶରେ ସାକ୍ଷାତ୍ ନାରାୟଣ ଯେ ଆସିଯିବେ! ଏହିପରି ଭାବରେ ଯେ ଆଦର ସହକାରେ ଦିଏ, ଭଗବାନ ସେଠାକୁ ଯାଆନ୍ତି। ଭଗବାନ ତ ଭାବଗ୍ରାହୀ। ଆପଣଙ୍କର କ୍ରୋଧ ଭାବ ଥିଲେ, ଭଗବାନ ସେଠାକୁ କେମିତି ଆସିବେ? ଆପଣଙ୍କର 'ଦେବା'ର ଭାବନା ଥିଲେ ଭଗବାନ 'ନେବା' ପାଇଁ ଲାଳାୟିତ ରହନ୍ତି। ଭଗବାନ ତ ପ୍ରେମ ଗ୍ରହାନ୍ତି। ପ୍ରେମ ଓ ଆଦର ସହିତ ଦିଆଯାଇଥିବା ଜିନିଷ ଭଗବାନଙ୍କୁ ଅତି ପ୍ରିୟ ଲାଗେ। ଦୁର୍ଯ୍ୟୋଧନର ସ୍ୱାଦିଷ୍ଟ ଭୋଜନ ଛାଡ଼ି ଭଗବାନ ବିଦୁର ଘରେ ଶାଗ ଖାଇଲେ—**'ବିଦୁର ଘରେ ଶାଗ ଯାଉ, ତାକୁ ଭୁଞ୍ଜିଲେ ମହାବାହୁ!'**



## ୨୪. ପ୍ରାପ୍ତ ଅଧିକାରର ସଦୁପଯୋଗ

ଗୋଟିଏ ହାତୀ ଥିଲା । ସେ ମରିଯିବାରୁ ଧର୍ମରାଜ ଯମଙ୍କ ଧାମରେ ପହଞ୍ଚିଲା । ଧର୍ମରାଜ ତାକୁ ପଚ୍ଚାରିଲେ—"ହଇରେ! ତତେ ଏତେ ବିଶାଳ ଶରୀରଟାଏ ମିଳିଛି, ତଥାପି ତୁ ମନୁଷ୍ୟର ବଶ ହୋଇଗଲୁ! ତୋର ଗୋଟେ ଗୋଡ଼ ଯେତିକି, ମନୁଷ୍ୟ ପରା ସେତିକି ହେବ, ପୁଣି ତୁ ତା'ର ବଶ ହୋଇଗଲୁ କେମିତି!" ହାତୀ କହିଲା—"ମହାରାଜ! ଏ ମନୁଷ୍ୟ ଏପରି ଗୋଟେ ପ୍ରାଣୀ ଯେ, ବଡ଼ ବଡ଼ ପ୍ରାଣୀ ମଧ୍ୟ ଏହାର ବଶ ହୋଇଯାଆନ୍ତି ।" ଧର୍ମରାଜ କହିଲେ—"ଆମ ଏଠିକି ତ ଅଗଣିତ ଲୋକ ଆସୁଛନ୍ତି!" ହାତୀ ଉତ୍ତର ଦେଲା—"ଆପଣଙ୍କ ଏଠିକି କେବଳ ମୂର୍ଦ୍ଦାରମାନେ ହିଁ ଆସୁଛନ୍ତି, ଗୋଟେ ଜିଅନ୍ତା ଲୋକ ଆସିଲେ ଜଣାପଡ଼ିବ!" ଧର୍ମରାଜ ଦୂତମାନଙ୍କୁ ଗୋଟିଏ ଜିଅନ୍ତା ଲୋକକୁ ଆଣିବା ପାଇଁ କହିଲେ । ଦୂତମାନେ ଆଜ୍ଞା ଶିରୋଧାର୍ଯ୍ୟ କଲେ ।

ଦୂତମାନେ ଖୋଜି ବୁଲୁ ଥାଆନ୍ତି । ଖରାଦିନେ ଛାତ ଉପରେ ଖଟ ପକାଇ ଜଣେ ଲୋକ ଶୋଇଥିବାର ସେମାନେ ଦେଖିଲେ । ଦୂତମାନେ ଖଟ ସହିତ ତାକୁ ଉଠାଇ ନେଲେ । ବାଟରେ ଯାଉ ଯାଉ ସେ ଲୋକଟିର ନିଦ ଭାଙ୍ଗିଗଲା । ସେ ଭାବିଲା, ଏ କ'ଣ ହେଉଛି! ସେ ଥିଲା ଜାତିରେ କାୟସ୍ଥ । ବହି ଲେଖାଲେଖି କରୁଥିଲା । ସେ ବହିରୁ ଧର୍ମରାଜଙ୍କ ଦୂତମାନଙ୍କର ଲକ୍ଷଣ ବିଷୟରେ ପଢ଼ିଥିଲା । ସେ ଜାଣିପାରିଲା ଯେ, ତାକୁ ଧର୍ମରାଜଙ୍କର ଦୂତମାନେ ନେଇଯାଉଛନ୍ତି! ସେ ପକେଟରୁ କାଗଜ ଓ କଲମ ବାହାର କଲା । କାଗଜରେ କିଛି ଲେଖି ପୁଣି ପକେଟରେ ରଖିଦେଲା । ସେ ଭାବିଲା—"ଯଦି ମୁଁ ଏବେ କିଛି ପାଟିତୁଣ୍ଡ କିରବି ବା ଏପଟ ସେପଟ ହେବି, ତେବେ ତଳକୁ ଖସି ପଡ଼ିବି, ହାଡ଼ଗୋଡ଼ ଭାଙ୍ଗିଯିବ । ତେଣୁ ଯାହା ହେବ ପରେ ଦେଖାଯିବ!" ଏପରି ଭାବି ସେ ଖଟରେ ସେମିତି ଶୋଇ ରହିଲା ।

ସକାଳୁ ସକାଳୁ ଦୂତମାନେ ଧର୍ମରାଜଙ୍କ ନିକଟରେ ପହଞ୍ଚିଲେ ।

ଧର୍ମରାଜଙ୍କର ସଭା ବସିଥିଲା । ଦୂତମାନେ ଖଟଟିକୁ ତଳେ ରଖିଦେଲେ । ସେହି କାୟସ୍ଥଜଣକ ସଙ୍ଗେ ସଙ୍ଗେ ପକେଟରୁ କାଗଜ ଖଣ୍ଡିକ ବାହାର କରି ଧର୍ମରାଜଙ୍କୁ ଦେବା ପାଇଁ ଦୂତମାନଙ୍କ ହାତକୁ ବଢ଼ାଇ ଦେଲା । ସେଥିରେ ଭଗବାନ ବିଷ୍ଣୁଙ୍କର ନାମ ଲେଖା ହୋଇଥିଲା । ଦୂତମାନେ ସେହି କାଗଜ ଖଣ୍ଡିକ ଧର୍ମରାଜଙ୍କୁ ଦେଲେ । ଧର୍ମରାଜ ତାହା ପଢ଼ିଲେ । ସେଥିରେ ଲେଖାଥିଲା—

"ଧର୍ମରାଜ! ନାରାୟଣଙ୍କର ଯଥାଯୋଗ୍ୟ......... । ମୋର ଏହି ଗୁମାସ୍ତା ଆପଣଙ୍କ ପାଖକୁ ଯାଉଛି । ଏହାଦ୍ୱାରା ସବୁ କାମ କରାଇବେ ।"

ଦସ୍ତଖତ—

**ନାରାୟଣ, ବୈକୁଣ୍ଠପୁରୀ ।**

ପତ୍ରଟିକୁ ପଢ଼ି ଧର୍ମରାଜ ନିଜର ଆସନରୁ ଉଠି ପଡ଼ିଲେ ଏବଂ କହିଲେ—"ଆସନ୍ତୁ, ଆପଣ ସିଂହାସନରେ ବସନ୍ତୁ ।" ଧର୍ମରାଜ ଭଗବାନଙ୍କର ଆଦେଶ ବୋଲି ଭାବି ସେହି କାୟସ୍ଥକୁ ସିଂହାସନରେ ବସାଇ ଦେଲେ ।

ଦୂତମାନେ ଅନ୍ୟ ମୃତ ଲୋକଙ୍କୁ ଆଣିଲେ । କାୟସ୍ଥ କହିଲା— "ଏ କିଏ?" ଦୂତଗଣ କହିଲେ—"ମହାରାଜ! ଏ ଜଣେ ବଡ଼ ଡାକୁ । ବହୁତ ଲୋକଙ୍କୁ ଲୁଟିଛି, ବହୁତ ଲୋକଙ୍କୁ ମାରିଛି । ଏହାକୁ କ'ଣ ଦଣ୍ଡ ଦିଆଯିବ?" କାୟସ୍ଥ କହିଲା—"ଏହାକୁ ବୈକୁଣ୍ଠକୁ ପଠାଇଦିଅ ।"

ଆଉ ଜଣେ ଆସିଲା । "ଇଏ କିଏ?"

"ମହାରାଜ! ଇଏ କ୍ଷୀରବିକାଳୀ । ଇଏ କ୍ଷୀରରେ ପାଣି ମିଶାଇ ବିକୁଥିଲା, ଯାହାଫଳରେ ପିଲାମାନଙ୍କର ପେଟ ବେମାରି ବଢ଼ିଗଲା ଏବଂ ସେମାନେ ରୁଗ୍ଣ ହୋଇଗଲେ । ଏହାକୁ କି ଦଣ୍ଡ ଦେବା?"

"ଏହାକୁ ମଧ୍ୟ ବୈକୁଣ୍ଠକୁ ପଠାଅ ।" "ଇଏ କିଏ?"

"ଆଜ୍ଞା! ଇଏ ମିଛ ସାକ୍ଷୀ ଦେଇ ଅନେକ ଲୋକଙ୍କୁ ଜେଲ୍‌ରେ ପୂରାଇଛି । ଏହାକୁ କ'ଣ କରିବା?"

"ଆରେ, ପଗ୍ଭରୁଛ କ'ଣ? ବୈକୁଣ୍ଠକୁ ପଠାଅ ।"

ଏଥର ବ୍ୟଭିଚାରୀ, ପାପୀ, ହିଂସକ ଯେ କେହି ଆସିଲେ, ତାକୁ ବୈକୁଣ୍ଠକୁ ପଠାଇବାକୁ ଆଦେଶ ହୋଇଗଲା। ଧର୍ମରାଜ କରନ୍ତେ ବା କ'ଣ! ସିଂହାସନରେ ବସିଥିବା ବ୍ୟକ୍ତି ଯାହା କହିବେ, ତାହା ହିଁ ଠିକ୍। ସେପଟେ ବୈକୁଣ୍ଠରେ ଭିଡ଼ ଜମିଲା। ଏହା ଦେଖି ଭଗବାନ ଚିନ୍ତାରେ ପଡ଼ିଗଲେ—ସେ ଭାବିଲେ, ଏତେ ଲୋକ ଏଠିକି କିପରି ଆସୁଛନ୍ତି, ମୃତ୍ୟୁଲୋକରେ କୌଣସି ମହାତ୍ମା ପ୍ରକଟ ହେଲେ କି? ଘଟଣା କ'ଣ, ସମସ୍ତେ ବୈକୁଣ୍ଠକୁ ଆସୁଛନ୍ତି କେମିତି? ଏମାନେ ଆସୁଛନ୍ତି କେଉଁଠୁ? ଦେଖିଲା ବେଳକୁ ଧର୍ମରାଜଙ୍କ ପାଖରୁ ଆସୁଛନ୍ତି।

ଭଗବାନ ଧର୍ମରାଜଙ୍କ ପାଖକୁ ଗଲେ। ତାଙ୍କୁ ଦେଖି ସମସ୍ତେ ଠିଆ ହୋଇ ପଡ଼ିଲେ। କାୟସ୍ଥ ମଧ୍ୟ ଠିଆ ହୋଇଗଲା। ଭଗବାନ ପଚାରିଲେ—ଧର୍ମରାଜ! ତୁମେ ସମସ୍ତଙ୍କୁ ବୈକୁଣ୍ଠ ପଠାଉଛ ଯେ! ଘଟଣା କ'ଣ? କ'ଣ ଏମାନେ ସମସ୍ତେ ଭକ୍ତ?''

ଧର୍ମରାଜ—''ପ୍ରଭୁ! ଏସବୁ ମୋର କାମ ନୁହେଁ। ଆପଣ ପଠାଇଥିବା ଗୁମାସ୍ତା ହିଁ ଏସବୁ କରୁଛନ୍ତି।''

ଭଗବାନ କାୟସ୍ଥକୁ ପଚାରିଲେ—''ତୋତେ ଏଠିକି ପଠାଇଲା କିଏ?'' କାୟସ୍ଥ—''ପ୍ରଭୁ! ଆପଣ।''

''ମୁଁ କେତେବେଳେ ପଠାଇଲି?''

''ମୁଁ ଏଠାକୁ ଆସିଯିବାଟା କଣ ମୋ ବୋପା ହାତର କଥା? ଆପଣ ହିଁ ତ ପଠାଇଛନ୍ତି। ଆପଣଙ୍କ ଇଚ୍ଛା ବିନା କଣ କୌଣସି କାମ ସମ୍ଭବ? ଏସବୁ କଣ ମୋ ବଳରେ ହୋଇଛି?''

''ଠିକ୍ ଯେ, କିନ୍ତୁ ତୁ ଏ କ'ଣ କଲୁ?''

''ମୁଁ କ'ଣ କଲି ପ୍ରଭୁ?''

''ତୁ ସମସ୍ତଙ୍କୁ ବୈକୁଣ୍ଠକୁ ପଠାଇ ଦେଲୁ ଯେ!''

''ଯଦି ବୈକୁଣ୍ଠକୁ ପଠାଇବାଟା ଖରାପ ହେଲା, ତେବେ ଯେତେ ସନ୍ଥ ମହାତ୍ମା ଅଛନ୍ତି, ସମସ୍ତଙ୍କୁ ଦଣ୍ଡ ଦିଆଯାଉ! ଯଦି ଏହା ଖରାପ କାମ ନୁହେଁ, ତେବେ ଖୁଣ୍ଟା ଦେଉଛନ୍ତି କେଉଁଥିପାଇଁ? ଏସବୁ ସନ୍ତ୍ୱେ

ଯଦି ଆପଣଙ୍କ ପସନ୍ଦ ହେଉ ନାହିଁ, ତେବେ ସମସ୍ତଙ୍କୁ ସେଠାରୁ ଫେରାଇ ଦିଅନ୍ତୁ। କିନ୍ତୁ ଭଗବଦ୍‌ଗୀତାରେ ଲିଖିତ **'ଯଦ୍‌ଗତ୍ୱା ନ ନିବର୍ତ୍ତନ୍ତେ ତଦ୍ଧାମ ପରମଂ ମମ'** (୧୫।୬) 'ମୋ ଧାମକୁ ଯିବାପରେ କେହି ଲେଉଟି ଆସେ ନାହିଁ' ଶ୍ଳୋକଟିକୁ ଆପଣଙ୍କୁ କାଟିବାକୁ ପଡ଼ିବ।''

''ଏ କଥା ତ ସତ୍ୟ ଯେ, କେହି ଯେତେ ବଡ଼ ପାପୀ ହୋଇଥିଲେ ବି ଯଦି ସେ ବୈକୁଣ୍ଠକୁ ଚାଲିଯାଏ, ସେ ପୁଣି ଫେରି ଆସିବାର ପ୍ରଶ୍ନ ଉଠୁ ନାହିଁ। ତା'ର ସବୁ ପାପ ନଷ୍ଟ ହୋଇଯିବ। କିନ୍ତୁ ତୁ ଏ କାମ କଲୁ କାହିଁକି?''

''ପ୍ରଭୁ! କାହିଁକି କଲି କ'ଣ କହିବି? ମୋ ହାତରେ କାମ ରହିଲେ ମୁଁ ଏମିତି ହିଁ କରିବି। ମୁଁ ଭଲଭାବେ ଜାଣିଛି ଯେ, ଅଳ୍ପ ସମୟ ପାଇଁ ପଦ ମିଳିଛି; ତେବେ ଭଲ କାମ ନ କରିବି କାହିଁକି? ଲୋକମାନଙ୍କର ଉଦ୍ଧାର କରିବାଟା କଣ ଖରାପ କାମ?''

ଭଗବାନ ଧର୍ମରାଜଙ୍କୁ ପଚାରିଲେ—''ଧର୍ମରାଜ! ତୁମେ ଏହାକୁ ସିଂହାସନରେ ବସାଇଲ କିପରି?''

ଧର୍ମରାଜ କହିଲେ—''ପ୍ରଭୁ! ଏଇ ଦେଖନ୍ତୁ, ଆପଣଙ୍କର ପତ୍ର। ତଳେ ପରିଷ୍କାରଭାବେ ଆପଣଙ୍କର ହସ୍ତାକ୍ଷର।''

ଭଗବାନ କାୟସ୍ଥଙ୍କୁ ପଚାରିଲେ—''ହଇରେ, ମୁଁ ତୋତେ ଏ ପତ୍ର କେତେବେଳେ ଦେଲି?''

କାୟସ୍ଥ କହିଲା—''ଆପଣ ଗୀତାରେ କହିଛନ୍ତି ନା—**'ସର୍ବସ୍ୟ ଚାହଂ ହୃଦି ସନ୍ନିବିଷ୍ଟଃ'** (୧୫।୧୫) 'ମୁଁ ସମସ୍ତଙ୍କ ହୃଦୟରେ ବିରାଜମାନ'। ହୃଦୟରୁ ପତ୍ର ଲେଖିବା ପାଇଁ ପ୍ରେରଣା ମିଳିଲା, ତେଣୁ ମୁଁ ଲେଖିଦେଲି। ଆଦେଶ ଆପଣଙ୍କର ହେଲା ନା? ଯଦି ଆପଣ ଏହାକୁ ମୋର କର୍ତ୍ତୃତ୍ୱ ମାନୁଛନ୍ତି, ତେବେ ଗୀତାରୁ ଉପର୍ଯ୍ୟୁକ୍ତ ଶ୍ଳୋକଟିକୁ କାଟି ଦିଅନ୍ତୁ!''

ଭଗବାନ କହିଲେ—''ହଉ, ଛାଡ଼ ସେ କଥା''। ପୁଣି ଧର୍ମରାଜଙ୍କୁ

ପଚ୍ଚାରିଲେ—"ଧର୍ମରାଜ! ଘଟଣା କ'ଣ? ଇଏ ଏଠାକୁ ଆସିଲା କେମିତି?"

ଧର୍ମରାଜ କହିଲେ—"ପ୍ରଭୁ! କେମିତି ଆସିଲା କ'ଣ କହିବି, ଆପଣଙ୍କ ପତ୍ର ନେଇ ଆସିଥିଲା।" ଧର୍ମରାଜ ଦୂତମାନଙ୍କୁ ପଚ୍ଚାରିଲେ—"ଏସବୁ କେମିତି ହେଲା?"

ଦୂତମାନେ କହିଲେ—"ମହାରାଜ! ଆପଣ ନିଜେ ଦିନେ କହିଥିଲେ ନା ଗୋଟିଏ ଜିଅନ୍ତା ମଣିଷ ଆଣିବା ପାଇଁ?"

ଧର୍ମରାଜ—"ତେବେ ଇଏ କ'ଣ ସେହି ଲୋକ? ଆରେ, ମୋ ସାଙ୍ଗରେ ଟିକେ ପରିଚୟ ତ କରାଇ ଦେବା କଥା!"

ଦୂତଗଣ—"ମହାରାଜ! ଆମେ ପରିଚୟ କରାଇବାକୁ ବେଳ କାଇଁ! ଆପଣ ତ ସାଙ୍ଗେ ସାଙ୍ଗେ ପତ୍ର ପଢ଼ି ଏହାକୁ ସିଂହାସନରେ ବସାଇ ଦେଲେ। ଆମେ ଭାବିଲୁ, ବୋଧେ ଇଏ ଆପଣଙ୍କର ଚିହ୍ନା ପରିଚିତ ହୋଇଥିବ, ସେପରି ସ୍ଥିତିରେ ଆମର କହିବାର ସାହସ କାଇଁ?"

ସେଇଠି ଠିଆ ହୋଇ ହାତୀ ସବୁ ଦେଖୁଥାଏ, ସେ କହିଲା—"ମହାରାଜ! ରାମ ରାମ! ଆପଣ ମୋତେ କହିଥିଲେ ନା ମୁଁ କେମିତି ଗୋଟେ ମନୁଷ୍ୟର ବଶ ହୋଇଗଲି ବୋଲି? ମୁଁ କ'ଣ, ସ୍ୱୟଂ ଧର୍ମରାଜ ଓ ଭଗବାନ ମଧ୍ୟ ବଶ ହୋଇଗଲେ! ମହାରାଜ! ଏ କଳାମୁଣ୍ଡିଆ ମଣିଷ ବଡ଼ ବିଚିତ୍ର। ଚାହିଁଲେ ସବୁ ଓଲଟ ପାଲଟ କରିଦେବ! କିନ୍ତୁ ଇଏ ନିଜେ ସଂସାରରେ ପଡ଼ିଯାଇଛି।"

ଭଗବାନ କାୟସ୍ଥକୁ କହିଲେ—"ହଉ, ଯାହା ହେଲା ହେଲା, ଏବେ ତୁ ମର୍ତ୍ତ୍ୟକୁ ଚାଲି ଯା।"

କାୟସ୍ଥ କହିଲା—ଗୀତାରେ ତ ଆପଣ କହିଛନ୍ତି—**'ମାମୁପେତ୍ୟ ତୁ କୌନ୍ତେୟ ପୁନର୍ଜନ୍ମ ନ ବିଦ୍ୟତେ'** (୮।୧୬) 'ମୋତେ ପ୍ରାପ୍ତ ହେବାପରେ ଆଉ ଜନ୍ମ ହୁଏ ନାହିଁ'; ତେବେ କହନ୍ତୁ, ମୁଁ ଆପଣଙ୍କୁ ପ୍ରାପ୍ତ ହୋଇଛି କି ନାହିଁ?"

ଭଗବାନ—'ହଉ ଠିକ୍ ଅଛି, ତୁ ମୋ ସାଙ୍ଗରେ ଚ୍ଲ।"

କାୟସ୍ଥ—"ପ୍ରଭୁ! ମୁଁ ଏକୁଟିଆ କେମିତି ଯିବି? ବିଚରା ହାତୀଟା ରହିଯିବ?" ଏହାର କୃପାରୁ ତ ମୁଁ ଏଠାକୁ ଆସିଛି। ଏହାକୁ ମଧ୍ୟ ସାଙ୍ଗରେ ନେଇ ଚ୍ଲନ୍ତୁ!"

ହାତୀ କହିଲା—"ମୋର ବହୁତ ଭାଇ ଏଇଠି ନରକରେ ପଡ଼ିଛନ୍ତି, ସେମାନଙ୍କୁ ସାଥିରେ ନେଇ ଚ୍ଲନ୍ତୁ।"

ଭଗବାନ କହିଲେ—"ହଉ, ସମସ୍ତଙ୍କୁ ନେଇଚ୍ଲ!" ଭଗବାନ ଆସିବାରୁ ହାତୀର ମଧ୍ୟ କଲ୍ୟାଣ (ଉଦ୍ଧାର) ହେଲା, କାୟସ୍ଥର ମଧ୍ୟ କଲ୍ୟାଣ ହେଲା ଏବଂ ଅନ୍ୟ ଜୀବମାନଙ୍କର ମଧ୍ୟ କଲ୍ୟାଣ ହେଲା!

ଏ କାହାଣୀଟି ତ କଳ୍ପିତ, କିନ୍ତୁ ଏହାର ସିଦ୍ଧାନ୍ତ ଅତି ଉତ୍ତମ। ନିଜ ହାତରେ କୌଣସି ଅଧିକାର ଥିଲେ ତାହାଦ୍ୱାରା ସମସ୍ତଙ୍କର ସେବା କରନ୍ତୁ। ଯେତିକି ପାରୁଛନ୍ତି, ସେତିକି ଭଲ କାମ କରନ୍ତୁ। ନିଜଆଡୁ କାହାର ମନ୍ଦ ନ କରନ୍ତୁ, କାହାକୁ ଦୁଃଖ ନ ଦିଅନ୍ତୁ। ଗୀତାର ସିଦ୍ଧାନ୍ତ ହେଉଛି—**'ସର୍ବଭୂତହିତେ ରତାଃ'** (୫।୨୫, ୧୨।୪) 'ପ୍ରତ୍ୟେକ ପ୍ରାଣୀଙ୍କ ହିତରେ ପ୍ରୀତି ହେଉ'। ଅଧିକାର, ପଦ ଇତ୍ୟାଦି ଅଳ୍ପ ଦିନିଆ କଥା। ଏସବୁ ସବୁଦିନ ପାଇଁ ରହିବ ନାହିଁ। ତେଣୁ ସମସ୍ତଙ୍କ ସହିତ ଉତ୍ତମ ବ୍ୟବହାର କରନ୍ତୁ।



## ୨୫. 'ସବକେ ଦାତା ରାମ'

ଥରକର କଥା । ବାଦଶାହ ଆକବର ଜଙ୍ଗଲକୁ ଶିକାର କରିବା ପାଇଁ ଯାଇଥିଲେ । ସାଙ୍ଗରେ ବହୁତ ଲୋକ ଥିଲେ । ଦୈବଯୋଗକୁ ସେ ଜଙ୍ଗଲରେ ଏକୁଟିଆ ବାଟବଣା ହୋଇଗଲେ । ଆଗକୁ ଯାଇ ଗୋଟିଏ କୃଷ ବିଲ ଦେଖିଲେ । ସେଠାରେ ପହଞ୍ଚି ବିଲ ମାଲିକକୁ କହିଲେ— "ଭାଇ! ମୋତେ ଖୁବ୍ ଭୋକ ଓ ଶୋଷ ଲାଗୁଛି, କିଛି ଖାଇବା-ପିଇବାକୁ ଦିଅ । ମୁଁ ଜଣେ ରାଜକର୍ମଚାରୀ ।" କୃଷକ କହିଲା—"ଠିକ୍ ଅଛି, ତୁମେ ତ ଆମର ମାଲିକ ।" ଏହା କହି ସେ ତାଙ୍କୁ ଭୋଜନ କରାଇଲା । ତା'ପରେ ବିଲରୁ ଆଖୁ ଆଣି ଦୋରୁଅ ବାହାର କରି ପିଇବାକୁ ଦେଲା । ବିଶ୍ରାମ କରିବା ପାଇଁ ଖଟିଆ ପକାଇଦେଲା । ଏଥିରେ ବାଦଶାହ ବହୁତ ଖୁସି ହେଲେ । ତାଙ୍କୁ ଲାଗିଲା ସତେ ଯେପରି ଏମିତିକା ସର୍ବତ ସେ କେବେ ପିଇ ନ ଥିଲେ । ଜଙ୍ଗଲରେ ଭୋଜନ କରିବାକୁ ଭାରି ଭଲ ଲାଗେ, ତା'ସାଙ୍ଗକୁ ଭୋକ ଲାଗୁଥିଲେ ତୃପ୍ତି କଥା ଆଉ କଣ କୁହାଯିବ!

ବାଦଶାହ ସେଠାରୁ ଫେରିବା ସମୟରେ କୃଷକକୁ କହିଲେ—"ମୋ ନାଆଁ ଆକବର, କେବେ କୌଣସି କାମ ପଡ଼ିଲେ ଦିଲ୍ଲୀ ଆସିବ । ମୋ ନାଆଁ କହିଲେ ସମସ୍ତେ ଆମ ଘର ଦେଖାଇଦେବେ ।" ପୁଣି କହିଲେ— "କଲମ, କାଗଜ ଆଣ, ମୁଁ ଲେଖିଦେବି ।" ବିଲରେ କଲମ, କାଗଜ କୁଆଡ଼ୁ ବା ଆସିବ? ବିଲରେ ରହିବା ଲୋକ, ଲେଖାପଢ଼ା ଜାଣିନି । ସେଠାରେ ଗୋଟିଏ ଭଙ୍ଗା ମାଠିଆ ପଡ଼ିଥିଲା । କୃଷୀ ତାହାକୁ ବାଦଶାହଙ୍କ ଆଗରେ ରଖିଦେଲା ଓ ଖଣ୍ଡେ ଅଙ୍ଗାର ଆଣିଦେଲା । ବାଦଶାହ ମାଠିଆରେ ଲେଖିଦେଲେ । ସେ ବିଚରା ଲେଖାପଢ଼ା ଜାଣି ନ ଥିଲା । ଆକବର କହିଲେ—"ମୋ ପାଖକୁ ଗଲାବେଳେ ଏହି ଲେଖାଟି ନେଇଥିବ ।" ସେ ହଁ କଲା । ସେ ସେହି ଭଙ୍ଗା ମାଠିଆଟିକୁ ରଖିଦେଲା । କେତେ ବର୍ଷ ପର୍ଯ୍ୟନ୍ତ ତାହା ସେମିତି ପଡ଼ି ରହିଲା ।

ବର୍ଷେ ଦୁର୍ଭିକ୍ଷ ପଡ଼ିଲା, ଫସଲ ହେଲା ନାହିଁ; ବଡ଼ ଅସୁବିଧା । ନିଜ ପାଇଁ ଅନ୍ନ ମୁଠାଏ ଓ ଗାଈ ମଇଁଷିଙ୍କ ପାଇଁ ଘାସ କେରାଏ ବି ନାହିଁ । ପାଣି ମଧ୍ୟ ଶେଷ । ଏପରି ହେବାରୁ ଦିନେ ତା' ସ୍ତ୍ରୀ କହିଲା—"ଦିନେ ଜଣେ ରାଜକର୍ମଚାରୀ ଆସିଥିଲେ ନା? ସେ କହିଥିଲେ ଯେ ଆବଶ୍ୟକ ପଡ଼ିଲେ ଦିଲ୍ଲୀ ଆସିବ ବୋଲି । ଥରେ ତାଙ୍କ ପାଖକୁ ଯାଇ ଦେଖୁନ?" ସ୍ତ୍ରୀ ବାରମ୍ବାର କହିବାରୁ ଭଙ୍ଗା ମାଠିଆଟିକୁ ଧରି ସେ ଚାଲିଲା । ଦିଲ୍ଲୀରେ ପହଞ୍ଚି ସେ ପଚାରିଲା—"ଆକବରିଆର ଘର କୋଉଟା?" ଆକବରଙ୍କ ନାମ ଶୁଣି କେହି ଜଣେ ବାଟ ବତେଇଦେଲା । ରାଜମହଲର ଦ୍ୱାରରେ ଯାଇ ପଚାରିଲା—"ଆକବରିଆର ଘର ଏଇଟା କି?"

ଦ୍ୱାରପାଳ ତାକୁ ଧମକାଇ କହିଲା—"ନାଆଁ କହି ଶିଖିନୁ କିରେ? ସଂଯତ ହୋଇ କହ । ସେ ତା' ଭାଷାରେ ସରଳଭାବେ କହୁଥାଏ । ଭଙ୍ଗା ମାଠିଆଟିକୁ ଦେଖାଇ କହିଲା—"ଆକବରିଆକୁ ଯାଇ କହିଦିଅ ଯେ ତାଙ୍କ ସହିତ କେହି ଜଣେ ଦେଖା କରିବାକୁ ଚାହୁଁଛି ।" ବାଦଶାହଙ୍କର ହସ୍ତାକ୍ଷର ଦେଖି ଦ୍ୱାରପାଳ ଆଶ୍ଚର୍ଯ୍ୟ! ସେ ଯାଇ କହିଲା—"ମହାରାଜ! ଜଣେ ଗାଉଁଲି ଲୋକ ଆସିଛି, ଗାଉଁଲି ଭାଷାରେ କହୁଛି, ସଭ୍ୟ ଭାଷାରେ କହି ଜାଣିନି, ସେ ଆପଣଙ୍କ ସହିତ ଭେଟିବାକୁ ଚାହୁଁଛି ।" ତାକୁ ଡକାଗଲା । ବାଦଶାହ ଉଚ୍ଚ ସିଂହାସନରେ ବସିଥାଆନ୍ତି । ତାଙ୍କୁ ଦେଖି ଚାଷୀ କହିଲା—"ଆରେ, ଆକବରିଆ! ତୁ ତ ବହୁତ ଉପରେ ବସିଛୁ!" ବାଦଶାହ କହିଲେ—"ଆସ ଭାଇ! ଆସ, ବସ!" ତାକୁ ଆସନ ଦେଇ ବାଦଶାହ କହିଲେ—"ତୁମେ ଟିକେ ବସିଥାଅ, ମୋର ନମାଜ ପଢ଼ିବା ସମୟ ହୋଇ ଗଲାଣି, ତେଣୁ ମୁଁ ଟିକେ ନମାଜ ପଢ଼ି ଆସେ ।"

ତା'ପରେ ଆକବର ଗାମୁଛା ପାରି ସେଥିରେ ବାରମ୍ବାର ଉଠୁଥିବା ଓ ବସୁଥିବାର କୃଷକ ଦେଖିଲା । ଆକବର ନମାଜ ପଢ଼ିସାରି ସିଂହାସନରେ ବସିଯିବାରୁ କୃଷକ ତାଙ୍କୁ ପଚାରିଲା—"ତୁମେ ଏ କ'ଣ କରୁଥିଲ?" ସେ କହିଲେ—***"ପରବର ଦିଗାରକୀ ବନ୍ଦଗୀ କରୁଥିଲି ।"*** କୃଷକ କହିଲା—"ମୁଁ ବୁଝି ପାରିଲିନି ।" ତା'ପରେ ଆକବର କହିଲେ—"ଈଶ୍ୱରଙ୍କୁ ଜାଣିଛ ନା, ସେହି ଈଶ୍ୱର ଅର୍ଥାତ୍ ପରମାତ୍ମାଙ୍କ ନିକଟରେ

ହାଜିରି ପକାଉଥିଲି।'' ''ଏମିତି କେତେ ଥର କରୁଛ?'' ''ପାଞ୍ଚଥର।'' ''କ'ଣ ଏମିତି ପାଞ୍ଚଥର ଉଠାବସା କରୁଛ?'' ''ହଁ, ଯିଏ ଏତେ ଦେଇଛି, ତା'ପାଖରେ ହାଜିରି ପକାଉଛି।''

କୃଷକ—''ମୁଁ ତ ଥରେ ବି ହାଜିରି ପକାଉନି, ତଥାପି ସେ ସବୁ ଦେଇଛନ୍ତି ଓ ଦେଉଛନ୍ତି। ତୁମକୁ ଏମିତି ପାଞ୍ଚଥର କରିବାକୁ ପଡୁଛି! ଭଲ କଥା। ହଉ, ମୁଁ ଏବେ ଯାଉଛି, ରାମ-ରାମ।'' ଏପରି କହି ସେ ଯିବାକୁ ବାହାରିବାରୁ ଆକବର ପଗ୍ଚରିଲେ—''କାମ କ'ଣ? କାହିଁକି ଆସିଥିଲ?'' ସେ କହିଲା—''ମୋ ସ୍ତ୍ରୀ ଦିଲ୍ଲୀ ଯାଅ, ଦିଲ୍ଲୀ ଯାଅ କହିବାରୁ ମୁଁ ଆସିଥିଲି। ଏଠି ଆସି ଦେଖିଲି ଯେ, ତୁମେ ପାଞ୍ଚଥର ନମାଜ ପଢୁଛ। ଯଦି ତୁମକୁ ସବୁକିଛି ପରମାତ୍ମାଙ୍କ ଠାରୁ ମିଳିଛି, ତେବେ ମୁଁ ତୁମଠାରୁ କ'ଣ ନେବି? ମୋତେ କିଛି କରିବାକୁ ପଡୁନି, ଅଥଚ ସେହି ପରମାତ୍ମା ସବୁ ଦେଉଛି। ପୁଣି ତୁମଠାରୁ ନେବାର କ'ଣ ଅଛି?''

ଆକବର କହିଲେ—''ଭାଇ! ତୁମର ଯାହା ଦରକାର ନେଇଯାଅ''। ''ନା, ନା, ଏତେ କଷ୍ଟରେ ତୁମକୁ ମିଳିଥିବା ଜିନିଷ ମୁଁ ସେମିତି ମାହାଳିଆଟାରେ ନେଇଯିବି କେମିତି''—ଏହା କହି କୃଷକ ତା'ଘରକୁ ଫେରିଗଲା। ସ୍ତ୍ରୀ ପଗ୍ଚରିଲା—''କ'ଣ ହେଲା''? ସେ କହିଲା—''ପ୍ରଭୁଙ୍କୁ ସ୍ମରଣ କର। ଯିଏ ସମସ୍ତଙ୍କର ମାଲିକ, ସେ ହିଁ ସମସ୍ତଙ୍କର ଦାତା। ସେ ଆମର, ଆକବରର ଓ ସମସ୍ତଙ୍କର ମାଲିକ। ତାଙ୍କଠାରେ କୌଣସି ପକ୍ଷପାତିତା ନାହିଁ। ସେ ସମସ୍ତଙ୍କର ଆପଣାର, ତେଣୁ ସେ ଆମର ମଧ୍ୟ ଆପଣାର। ପୁଣି ସେହି ରାଜକର୍ମଗ୍ଚରୀକୁ କ'ଣ ମାଗିବା? ସେ ପରା ନିଜେ ମାଗୁଛି। ତେଣୁ ଭଗବାନଙ୍କ ପ୍ରତି ଭରସା ରଖ, ତାଙ୍କ ନାମ ସ୍ମରଣ କର।''

ଆଉ ଦିନକର କଥା। କେତେ ଜଣ ଗ୍ଚୋର ଗ୍ଚୋରି କରିବାକୁ ଗଲେ। କୃଷକର ଘରଟି ଗାଁଆ ବାହାରେ। ସେମାନେ ସେହି ଘର ପଛପଟେ ଲୁଚି ରହିଲେ। ଘର ଭିତରେ କୃଷକ ଓ ତା'ସ୍ତ୍ରୀ ଦୁହେଁ କଥାବାର୍ତ୍ତା ହେଉଥିଲେ। ସ୍ତ୍ରୀ କହୁଥାଏ—''ଦିଲ୍ଲୀ ଗଲ, ହେଲେ କିଛି ଆଣିଲ ନାହିଁ।'' ସେ କହିଲା— ''କ'ଣ ଆଣିଥାଆନ୍ତି''। ମୋ ପାଖରେ କିଛି ନ ଥିଲା।'' ''କିଛି ରୋଜଗାର

କରି ନ ଥାନ୍ତ''! ଏହା ଶୁଣି ସ୍ୱାମୀ କହିଲା—''ମୁଁ ସବୁ ଭଗବାନଙ୍କ ଉପରେ ଛାଡ଼ି ଦେଇଛି; ସେ ଦେଲେ ଯାଇ ନେବି।'' ''ଭଗବାନଙ୍କ ଉପରେ ଛାଡ଼ିଦେଲେ କ'ଣ ହେଲା, କିଛି କାମଧନ୍ଦା ତ କରିବାକୁ ହେବ।'' ''କାମଧନ୍ଦା ନ କରି ମଧ୍ୟ ଧନ ମିଳୁଛି, ହେଲେ ମୁଁ ତାହା ନେଉ ନାହିଁ। ଠାକୁରଙ୍କ ଇଚ୍ଛା ହେଲେ ସେ ଆମ ଘରକୁ ପଠାଇ ଦେବେ।'' ଏହିପରି ସ୍ୱାମୀ-ସ୍ତ୍ରୀ ଦୁହେଁ କଥାବାର୍ତ୍ତା ହେଉଥିଲେ। ସ୍ତ୍ରୀକୁ ଧୈର୍ଯ୍ୟ ଦେଇ ସ୍ୱାମୀ କହୁଥାଏ—''ଏବେ ବର୍ଷା ହୋଇଛି, ଚାଷ କରିବା, ସବୁ ଠିକ୍ ହୋଇଯିବ। ଚିନ୍ତା କରିବାର କିଛି ନାହିଁ। ମୁଁ ଭଗବାନଙ୍କ ଭରସାରେ ଅଛି, ସେଥିପାଇଁ ନେଉ ନାହିଁ। ଭଗବାନଙ୍କ ଦେବାର ବହୁତ ଉପାୟ ରହିଛି। ସେ ଚାହିଁଲେ ଛପର ଫାଡ଼ି ଦିଅନ୍ତି।''

ଚାଷୀ ଜଣକ ତା' ସ୍ତ୍ରୀକୁ କହିଲା—''ଶୁଣ! ଆଜିର ଘଟଣା କହୁଛି। ମୁଁ ନଦୀକୂଳକୁ ଯାଇଥିଲି। ହଠାତ୍ ନଦୀରେ ବନ୍ୟା ଆସିଗଲା। ପାଣି ବେଶୀ ବଢ଼ିଗଲା, ଫଳରେ ଅତଡ଼ା ଖସିଲା। ମୁଁ ଝାଡ଼ା ବସିସାରି ହାତ ଧୋଇବାକୁ ଗଲି। ଦେଖିଲି, ଗୋଟିଏ ମାଠିଆ ପଡ଼ିଛି। ତା'ଉପରୁ ମାଟି ଧୋଇ ହୋଇଯାଇଛି ଏବଂ ମାଠିଆ ଉପରେ ଗୋଟିଏ ଢାଙ୍କୁଣୀ ଘୋଡ଼ା ହୋଇଛି। ମୁଁ ଢାଙ୍କୁଣୀ କାଢ଼ି ଦେଖିଲା ବେଳକୁ ତା'ଭିତରେ ସୁନା, ରୁପା, ମୋତି, ମାଣିକ୍ୟ ଭରି ରହିଛି। ବହୁତ ଧନ। ମୁଁ ଭାବିଲି, ଏସବୁ କାହାର ଧନ ଜଣା ନାହିଁ, ତେଣୁ ମୁଁ ଏହାକୁ ନେବା ଠିକ୍ ହେବ ନାହିଁ, ଠାକୁରେ ନିଜେ ଘରକୁ ପଠାଇଦେଲେ ଯାଇ ରଖିବି। ପୁଣି ପୂର୍ବପରି ଢାଙ୍କୁଣୀ ଘୋଡ଼ାଇ ଦେଇ ମୁଁ ଲେଉଟି ଆସିଲି।'' ସ୍ତ୍ରୀ ପଚାରିଲା—''କେଉଁ ଜାଗାରେ କହିଲ?'' ସେ ସବୁ କଥା କହିଦେଲା ଯେ ଅମୁକ ଜାଗାରେ ଗୋଟେ ଜଙ୍ଗଲି କାଠଗଛ ଅଛି, ତା'ପାଖରେ।

ଚୋରମାନେ ଘର ପଛପଟେ ଥାଇ ସବୁ କଥା ଶୁଣୁ ଥାଆନ୍ତି। ସେମାନେ ବିଚାର କଲେ, ଏ ଚାଷୀ ଲୋକଟା ଗୋଟେ ପାଗଳ। ଚାଲ, ଆମେ ସେଠାକୁ ଯିବା; ସେଠାରୁ ଧନ ମିଳିଯିବ। ଆଉ କେଉଁଠୁ ଚୋରି କଲେ ଧରା ପଡ଼ିବାର ସମ୍ଭାବନା ରହିଛି! ଚାଷୀ ଲୋକଟି ଯେଉଁଠି ହାତ ଧୋଇଥିଲା, ଚୋରମାନେ ସେଠାକୁ ଗଲେ। ଢାଙ୍କୁଣୀ ଦେବାବେଳେ ଚାଷୀ

ଲୋକଟି ଭୁଲ୍‌ରେ ଢାଙ୍କୁଣୀ ଅଧା ଦେଇ ପଳାଇ ଆସିଥିଲା। ସେ ଚାଲି ଆସିବା ପରେ ଗୋଟିଏ ସାପ ଆସି ତା'ଭିତରେ ଡେଙ୍କାମାରି ରହିଯାଇଥିଲା। ଚୋରମାନେ ଢାଙ୍କୁଣୀ ଖୋଲିବାମାତ୍ରେ ସାପ ଫଁ ଫଁ ହେଲା। ସେମାନେ ହଠାତ୍ ଢାଙ୍କୁଣୀ ପକାଇ ଦେଇ ଜୋର୍‌ରେ ବନ୍ଦ କରିଦେଲେ। ତା'ପରେ ଚୋରମାନେ ବିଚାର କଲେ—ବୋଧେ ଚାଷୀ ଲୋକଟି ଆମକୁ ଦେଖି ନେଇଛି। ଆମକୁ ମାରିବା ପାଇଁ ସେ ଏସବୁ କହିଥିଲା। ଏହି ପାତ୍ରଟିରେ ନିଶ୍ଚୟ ବହୁତ ସାପ, ବିଛା ପ୍ରଭୃତି ଥିବେ। ଏହି ପାତ୍ରଟିକୁ ନେଇ ତା'ଘରେ ରଖିଦେଲେ ସାପ, ବିଛା ପ୍ରଭୃତି ତାକୁ କାମୁଡ଼ି ମାରିଦେବେ।

ସେହି ପାତ୍ରଟିକୁ ଲୁଗାରେ ବାନ୍ଧି ଚୋରମାନେ ଚାଷୀ ଘରକୁ ନେଇଗଲେ। ରାତି ସମୟ। ଚାଷୀ ଓ ତା'ର ପତ୍ନୀ ଶୋଇ ପଡ଼ିଥିଲେ। ଚୋରମାନେ ଚାଳ କଣା କରି ସେହି ପାତ୍ରଟିକୁ ଓଲଟାଇ ଦେଲେ। ଫଳରେ ସବୁଯାକ ଜିନିଷ ଘର ଭିତରେ ପଡ଼ିଲା। ଚୋରମାନେ ପଳାଇଗଲେ। ଉପରୁ ଆଗ ସାପଟି ପଡ଼ିଲା ଏବଂ ତା'ଉପରେ ସବୁଯାକ ସୁନା, ରୁପା ଓ ପାତ୍ରଟି ପଡ଼ିଲା। ଏହାଫଳରେ ସାପଟି ତଳେ ଚାପି ହୋଇ ମରିଗଲା। ଏହିଭଳି ଦେବାକୁ ଚାହିଁଲେ ଭଗବାନ ଚାଳ କଣା କରି ଦିଅନ୍ତି। ସକାଳ ହେବାରୁ ପତିପତ୍ନୀ ଉଠି ଦେଖନ୍ତି ତ, ଧନ ଗଦା ହୋଇଛି। ଆଉ କାହାକୁ ମାଗିବାର କି ଆବଶ୍ୟକତା? ପ୍ରକୃତରେ ଭଗବାନ କିପରି ଦିଅନ୍ତି, ତାହା ଜାଣି ହୁଏ ନାହିଁ। ଯେ ଭଗବାନଙ୍କ ଉପରେ ଭରସା କରେ, ସେ କେବେ ଖାଲି ଖାଲି ଯାଏ ନାହିଁ। ହୁଏତ ସେ ଭୋକରେ ରହିପାରେ, ତାକୁ ପିନ୍ଧିବାକୁ ଖଣ୍ଡେ ଲୁଗା ମିଳି ନ ପାରେ, ଜନସମାଜରେ ତା'ର ଅପମାନ ହୋଇପାରେ, କିନ୍ତୁ ତା'ମନରେ ଦୁଃଖ ହୁଏ ନାହିଁ। ଭଗବାନଙ୍କ ଉପରେ ପୂର୍ଣ୍ଣ ଭରସା ରଖୁଥିବା ବ୍ୟକ୍ତି ପ୍ରତ୍ୟେକ ପରିସ୍ଥିତିରେ ପ୍ରସନ୍ନ ରହେ।



# ୨୬. ମୁକ୍ତିର ଉପାୟ

ପୁରାଣ ହେଉଛି ଭାରତୀୟ ସଂସ୍କୃତିର ଅମୂଲ୍ୟ ନିଧି । ପୁରାଣରେ ମାନବଜୀବନକୁ ଉନ୍ନତ କରିବା ଭଳି ଅନେକ ସରଳ, ସରସ, ସୁନ୍ଦର ଓ ବିଚିତ୍ର ବିଚିତ୍ର କାହାଣୀ ପରିପୂର୍ଣ୍ଣ । ସେହି କାହାଣୀଗୁଡ଼ିକର ଉଦ୍ଦେଶ୍ୟ ରାଗ-ଦ୍ୱେଷରୁ ମୁକ୍ତ ହୋଇ ସ୍ୱକର୍ତ୍ତବ୍ୟ ପାଳନ କରିବାରେ ଓ ଭଗବାନଙ୍କୁ ପ୍ରାପ୍ତ କରିବାରେ ନିହିତ । ପଦ୍ମପୁରାଣର ଭୂମିଖଣ୍ଡରେ ଏହିପରି ଗୋଟିଏ କଥା ଅଛି ।

ଅମରକଣ୍ଟକ ତୀର୍ଥରେ ସୋମଶର୍ମା ନାମକ ଜଣେ ବ୍ରାହ୍ମଣ ଥିଲେ । ତାଙ୍କ ପତ୍ନୀର ନାମ ସୁମନା । ସେ ବଡ଼ ସାଧ୍ୱୀ ଓ ପତିବ୍ରତା ଥିଲେ । ତାଙ୍କର କୌଣସି ସନ୍ତାନ ନ ଥିଲା ଏବଂ ତାଙ୍କ ପାଖରେ ଧନର ମଧ୍ୟ ଅଭାବ ଥିଲା । ସନ୍ତାନ ଓ ଧନ ଅଭାବରୁ ସୋମଶର୍ମା ବହୁତ ଦୁଃଖୀ ରହୁଥିଲେ । ଦିନେ ନିଜ ପତିଙ୍କୁ ଅତ୍ୟନ୍ତ ଚିନ୍ତିତ ଦେଖି ସୁମନା କହିଲେ—ପ୍ରାଣନାଥ! ତୁମେ ଚିନ୍ତା ଛାଡ଼ିଦିଅ; କାରଣ ଚିନ୍ତା ସମାନ ଅନ୍ୟ କୌଣସି ଦୁଃଖ ନାହିଁ । ସ୍ତ୍ରୀ, ପୁତ୍ର ଓ ଧନ ପାଇଁ ତ କଦାପି ଚିନ୍ତା କରିବା ଉଚିତ ନୁହେଁ । ଏହି ସଂସାରରେ ଋଣାନୁବନ୍ଧ ଯୋଗୁଁ ଅର୍ଥାତ୍ କାହାର ଋଣ ପରିଶୋଧ କରିବା ପାଇଁ ଏବଂ କାହାଠାରୁ ଋଣ ଆଦାୟ କରିବା ପାଇଁ ହିଁ ଜୀବର ଜନ୍ମ ହୁଏ । ମାତା, ପିତା, ସ୍ତ୍ରୀ, ପୁତ୍ର, ଭାଇ, ମିତ୍ର, ସେବକ ପ୍ରଭୃତି ସମସ୍ତେ ନିଜ ନିଜର ଋଣାନୁବନ୍ଧ ଯୋଗୁଁ ହିଁ ଏହି ପୃଥିବୀରେ ଜନ୍ମ ନେଇ ଆମକୁ ପ୍ରାପ୍ତ ହୁଅନ୍ତି । କେବଳ ମନୁଷ୍ୟ ନୁହେଁ, ପଶୁପକ୍ଷୀ ମଧ୍ୟ ଋଣାନୁବନ୍ଧରୁ ହିଁ ଆସନ୍ତି ।

ସଂସାରରେ ଶତ୍ରୁ, ମିତ୍ର ଓ ଉଦାସୀନ—ଏପରି ତିନି ପ୍ରକାରର ପୁତ୍ର ଥାଆନ୍ତି । ଶତ୍ରୁ ସ୍ୱଭାବର ପୁତ୍ର ଦୁଇ ପ୍ରକାର । ପ୍ରଥମତଃ, ପୂର୍ବଜନ୍ମରେ ଯଦି କେହି କାହାଠାରୁ ଋଣ ନେଇଥାଏ, କିନ୍ତୁ ପରିଶୋଧ କରି ନ ଥାଏ, ତେବେ ପରଜନ୍ମରେ ଋଣ ଦେଇଥିବା ବ୍ୟକ୍ତି ସେହି ଋଣୀ ବ୍ୟକ୍ତିର ପୁତ୍ର ହୁଏ । ଦ୍ୱିତୀୟତଃ, ପୂର୍ବଜନ୍ମରେ ଯଦି କେହି କାହା ନିକଟରେ କିଛି

ବନ୍ଧକ ଦ୍ରବ୍ୟ ରଖିଥାଏ, କିନ୍ତୁ ବନ୍ଧକ ଫେରାଇବାର ସମୟ ଆସିଲେ ସେ ବନ୍ଧକ ନ ଫେରାଇ ଅପହରଣ କରେ, ତେବେ ପରଜନ୍ମରେ ବନ୍ଧକ ରଖିଥିବା ବ୍ୟକ୍ତି ବନ୍ଧକ ଦ୍ରବ୍ୟକୁ ଅପହରଣ କରିଥିବା ବ୍ୟକ୍ତିର ପୁତ୍ର ହୁଏ । ଏହି ଦୁଇ ପ୍ରକାରର ପୁତ୍ର ପିଲାବେଳୁ ପିତାମାତାଙ୍କ ସଙ୍ଗରେ ଶତ୍ରୁତା ରଖନ୍ତି ଏବଂ ଶତ୍ରୁପରି ବ୍ୟବହାର କରନ୍ତି । ବଡ଼ ହୋଇଗଲେ ସେମାନେ ପିତାମାତାଙ୍କର ସମ୍ପତ୍ତିକୁ ବୃଥାରେ ନଷ୍ଟ କରନ୍ତି । ବିବାହ ହୋଇଯିବା ପରେ ସେମାନେ କହନ୍ତି—"ଏ ଘର, ବିଲ, ଧନ ଆଦି ସବୁ ମୋର, ତୁମେ ମନା କରିବାକୁ କିଏ?" ଏହିପରିଭାବରେ ସେମାନେ ପିତାମାତାଙ୍କୁ ନାନାପ୍ରକାର କଷ୍ଟ ଦିଅନ୍ତି । ପିତାମାତାଙ୍କ ମୃତ୍ୟୁ ପରେ ସେମାନଙ୍କ ପାଇଁ ଶ୍ରାଦ୍ଧତର୍ପଣ କରନ୍ତି ନାହିଁ । କିନ୍ତୁ ମିତ୍ର ସ୍ୱଭାବର ପୁତ୍ର ପିଲାଦିନରୁ ପିତାମାତାଙ୍କର ହିତାକାଂକ୍ଷୀ ହୁଏ । ସେ ପିତାମାତାଙ୍କୁ ସର୍ବଦା ସନ୍ତୁଷ୍ଟ ରଖେ, ସ୍ନେହ ଓ ମଧୁର ବଚନ କହି ସେମାନଙ୍କୁ ପ୍ରସନ୍ନ ରଖିବା ପାଇଁ ଚେଷ୍ଟା କରେ । ପିତାମାତାଙ୍କ ମୃତ୍ୟୁ ପରେ ସେ ସେମାନଙ୍କ ପାଇଁ ଶ୍ରାଦ୍ଧତର୍ପଣ, ତୀର୍ଥଯାତ୍ରା, ଦାନ ଆଦି ମଧ୍ୟ କରେ । ଉଦାସୀନ ସ୍ୱଭାବର ପୁତ୍ର ସର୍ବଦା ଉଦାସୀନଭାବରେ ରହେ । ସେ କିଛି ଦିଏ ନାହିଁ କି କିଛି ନିଏ ନାହିଁ; କେବେ ରୁଷ୍ଟ ହୁଏ ନାହିଁ କି କେବେ ସନ୍ତୁଷ୍ଟ ହୁଏ ନାହିଁ; ସୁଖ ଦିଏ ନାହିଁ କି ଦୁଃଖ ଦିଏ ନାହିଁ* । ପୁତ୍ର ଯେପରି ତିନି ପ୍ରକାରର ହୋଇଥାଆନ୍ତି, ମାତା, ପିତା, ପତ୍ନୀ, ପୁତ୍ର, ଭାଇ ପ୍ରଭୃତି ଏବଂ ଗୃହକର, ପଡ଼ୋଶୀ, ମିତ୍ର ତଥା ଗାଈ, ମଇଁଷି, ଘୋଡ଼ା ପ୍ରଭୃତି ମଧ୍ୟ ସେହିପରି ତିନି ପ୍ରକାରର (ଶତ୍ରୁ, ମିତ୍ର ଓ ଉଦାସୀନ) ହୋଇଥାଆନ୍ତି । ଆମ ସହିତ ଏ ସମସ୍ତଙ୍କର ସମ୍ବନ୍ଧ କେବଳ ଋଣାନୁବନ୍ଧ ଯୋଗୁଁ ହିଁ ହୋଇଥାଏ ।

ସ୍ୱାମୀ! ଯାହାକୁ ଯେତେ ଧନ ମିଳିବାର ଥାଏ, ବିନା ପରିଶ୍ରମରେ ମଧ୍ୟ ତାକୁ ସେତିକି ଧନ ମିଳିଯାଏ ଏବଂ ଧନ ନଷ୍ଟ ହେବାର ସମୟ

---

* ଧରାଯାଉ କୌଣସି ବ୍ୟକ୍ତି କୌଣସି ସନ୍ଥଙ୍କର ବହୁତ ସେବା କରୁଛି । ଅନ୍ତସମୟରେ କୌଣସି କାରଣରୁ ସନ୍ଥଙ୍କର ଯଦି ସେହି ସେବକ କଥା ମନେପଡ଼େ, ତେବେ ସେ ସେହି ସେବକ ଘରେ ପୁତ୍ରରୂପରେ ଜନ୍ମ ହୁଅନ୍ତି ଏବଂ ଉଦାସୀନଭାବରେ ରହନ୍ତି ।

ଆସିଲେ ଯେତେ ରକ୍ଷା କଲେ ମଧ୍ୟ ତାହା ନଷ୍ଟ ହୋଇଯାଏ—ଏହା ବୁଝି ତୁମେ ଧନ ପାଇଁ ଚିନ୍ତା କରିବା ଉଚିତ ନୁହେଁ। ବାସ୍ତବରେ ଧର୍ମପାଳନରୁ ହିଁ ପୁତ୍ର ଓ ଧନ ଉଭୟର ପ୍ରାପ୍ତି ହୁଏ। ଧର୍ମାଚରଣ କରୁଥିବା ମନୁଷ୍ୟ ହିଁ ସଂସାରରେ ସୁଖି ପାଏ। ତେଣୁ ଧର୍ମ ଆଚରଣ କର। ଯେଉଁ ମନୁଷ୍ୟ କାୟମନୋବାକ୍ୟରେ ଧର୍ମାଚରଣ କରେ, ତା'ପାଇଁ ସଂସାରରେ କୌଣସି ବସ୍ତୁ ଦୁର୍ଲଭ ହୋଇ ରହେ ନାହିଁ।

—ଏପରି କହିସାରି ସୁମନା ବିସ୍ତାରପୂର୍ବକ ଧର୍ମର ସ୍ୱରୂପ ତଥା ତାହାର ଅଙ୍ଗଗୁଡ଼ିକୁ ବର୍ଣ୍ଣନା କଲେ। ତାହା ଶୁଣି ସୋମଶର୍ମା ପଚ୍ଚାରିଲେ— "ତୁମକୁ ଏତେ ଗୂଢ଼ତତ୍ତ୍ୱର ଜ୍ଞାନ ପ୍ରାପ୍ତ ହେଲା କିପରି?" ସୁମନା କହିଲେ—"ତୁମେ ତ ଜାଣିଛ ଯେ, ମୋର ପିତା ବଡ଼ ଧର୍ମାତ୍ମା ଓ ଶାସ୍ତ୍ରଜ୍ଞ ଥିଲେ, ଯଦ୍ଦ୍ୱାରା ସାଧୁମାନେ ମଧ୍ୟ ତାଙ୍କୁ ଆଦର କରୁଥିଲେ। ସେ ନିଜେ ମଧ୍ୟ ବଡ଼ ବଡ଼ ସନ୍ଥଙ୍କ ନିକଟକୁ ଯାଉଥିଲେ ଓ ସତ୍ସଙ୍ଗ କରୁଥିଲେ। ମୁଁ ତାଙ୍କର ଗୋଟିଏ ବୋଲି ଝିଅ; ତେଣୁ ସେ ମୋ ଉପରେ ଅଧିକ ସ୍ନେହ ରଖୁଥିଲେ ଏବଂ ନିଜ ସଙ୍ଗରେ ମୋତେ ମଧ୍ୟ ସତ୍ସଙ୍ଗକୁ ନେଉଥିଲେ। ଏହିପରି ସତ୍ସଙ୍ଗ ପ୍ରଭାବରୁ ମୋତେ ମଧ୍ୟ ଧର୍ମର ତତ୍ତ୍ୱ ସମ୍ବନ୍ଧରେ ଜ୍ଞାନ ହେଲା।"

ଏସବୁ କଥା ଶୁଣି ସୋମଶର୍ମା ପୁତ୍ରପ୍ରାପ୍ତିର ଉପାୟ ପଚ୍ଚାରିଲେ। ସୁମନା କହିଲେ—"ତୁମେ ମହାମୁନି ବଶିଷ୍ଠଙ୍କ ନିକଟକୁ ଯାଇ ତାଙ୍କୁ ପ୍ରାର୍ଥନା କର। ତାଙ୍କ କୃପାରୁ ତୁମକୁ ଗୁଣବାନ୍ ପୁତ୍ରଟିଏ ପ୍ରାପ୍ତ ହୋଇ ପାରିବ।" ପତ୍ନୀ କଥା ଶୁଣି ସୋମଶର୍ମା ବଶିଷ୍ଠଙ୍କ ନିକଟକୁ ଗଲେ। ସେ ବଶିଷ୍ଠଙ୍କୁ ପଚ୍ଚାରିଲେ—"କେଉଁ ପାପ ଯୋଗୁଁ ମୋତେ ପୁତ୍ର ଓ ଧନ ଅଭାବରେ କଷ୍ଟ ଭୋଗିବାକୁ ପଡୁଛି?" ବଶିଷ୍ଠ କହିଲେ—"ପୂର୍ବଜନ୍ମରେ ତୁମେ ବଡ଼ ଲୋଭୀ ଥିଲ ଏବଂ ଅନ୍ୟମାନଙ୍କ ସହିତ ଦ୍ୱେଷଭାବ ରଖୁଥିଲ। ତୁମେ କେବେହେଲେ ତୀର୍ଥଯାତ୍ରା, ଦେବପୂଜନ, ଦାନ ଆଦି ଶୁଭ କର୍ମ କରି ନାହଁ। ଶ୍ରାଦ୍ଧ ଦିନ ଆସିଲେ ତୁମେ ଘରୁ ବାହାରକୁ ଚ୍ଚାଲିଯାଉଥିଲ। ଧନ ହିଁ ତୁମର ସର୍ବସ୍ୱ ହୋଇଥିଲା। ତୁମେ ଦିନରାତି ଧନ ଚିନ୍ତାରେ ବୁଡ଼ି ରହୁଥିଲ। ତୁମକୁ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ମିଳିଗଲା, ତଥାପି ତୁମର

ତୃଷ୍ଣା ମେଣ୍ଟିଲା ନାହିଁ, ବରଂ ଅଧିକାଧିକ ବଢ଼ି ଚାଲିଲା । ତୁମେ ଜୀବନସାରା ଯେତେ ଧନ ଉପାର୍ଜନ କରିଥିଲ, ସବୁ ମାଟିତଳେ ପୋତିଦେଲ । ସ୍ତ୍ରୀ ଓ ପୁତ୍ରମାନେ ପଚାରୁଥାଆନ୍ତି; କିନ୍ତୁ ତୁମେ ସେମାନଙ୍କୁ ଧନ ଦେଲ ନାହିଁ କି ଧନ କେଉଁଠି ଅଛି କହିଲ ନାହିଁ । ଧନଲୋଭରେ ପଡ଼ି ତୁମେ ପୁତ୍ରସ୍ନେହ ମଧ୍ୟ ଭୁଲିଗଲ । ସେହି ସବୁ କର୍ମ ଯୋଗୁଁ ତୁମେ ଏ ଜନ୍ମରେ ଦରିଦ୍ର ଓ ପୁତ୍ରହୀନ ହେଲ । ଅବଶ୍ୟ, ତୁମେ ଥରେ ଖୁସି ମନରେ ତୁମ ଘରକୁ ଅତିଥିରୂପେ ଆସିଥିବା ଜଣେ ବିଷ୍ଣୁଭକ୍ତ ଓ ଜଣେ ଧର୍ମାତ୍ମା ବ୍ରାହ୍ମଣଙ୍କର ସେବା କରିଥିଲ । ତା'ଛଡ଼ା ତୁମେ ସପତ୍ନୀକ ଏକାଦଶୀ ବ୍ରତ ପାଳନ କରି ଭଗବାନ ବିଷ୍ଣୁଙ୍କୁ ପୂଜା ମଧ୍ୟ କରିଥିଲ । ଏହି କାରଣରୁ ତୁମକୁ ଉତ୍ତମ ବ୍ରାହ୍ମଣକୁଳରେ ଜନ୍ମ ମିଳିଲା । ବିପ୍ରବର! ଉତ୍ତମ ସ୍ତ୍ରୀ, ପୁତ୍ର, କୁଳ, ରାଜ୍ୟ, ସୁଖ, ମୋକ୍ଷ ପ୍ରଭୃତି ଦୁର୍ଲଭ ବସ୍ତୁଗୁଡ଼ିକର ପ୍ରାପ୍ତି ବିଷ୍ଣୁଙ୍କ କୃପାରୁ ହିଁ ହୁଏ । ତେଣୁ ତୁମେ ଭଗବାନ ବିଷ୍ଣୁଙ୍କର ଶରଣ ଯାଅ ଏବଂ ତାଙ୍କର ଭଜନ କର ।''

ବଶିଷ୍ଠ ଏପରି ବୁଝାଇବାରୁ ସୋମଶର୍ମା ସପତ୍ନୀକ ତତ୍ପରତାର ସହ ମନପ୍ରାଣ ଦେଇ ଭଗବାନଙ୍କ ଭଜନରେ ମଜ୍ଜି ରହିଲେ । ଉଠାବସା କଲାବେଳେ, ଚାଲବୁଲ କଲାବେଳେ, ସବୁ ସମୟରେ ସେ ଦୁହିଙ୍କର ଲକ୍ଷ୍ୟ ଭଗବାନଙ୍କ ପ୍ରତି ଥାଏ । ବଡ଼ ବଡ଼ ବିଘ୍ନ ଆସିଲେ ମଧ୍ୟ ସେ ଦୁହେଁ ନିଜ ସାଧନାରୁ ବିଚଳିତ ହେଉ ନ ଥିଲେ । ଏହିପରି ସେ ଦୁହିଙ୍କର ନିଷ୍ଠା ଦେଖି ଭଗବାନ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ଭଗବାନଙ୍କ ବରଦାନରୁ ସେ ଦୁହିଙ୍କୁ ମନୁଷ୍ୟଲୋକରେ ଉତ୍ତମ ଭୋଗ ଓ ଧନ ପ୍ରାପ୍ତ ହେଲା । ପୁତ୍ରଟିଏ ମଧ୍ୟ ହେଲା ।

ସୋମଶର୍ମାଙ୍କ ପୁତ୍ରର ନାମ ଥିଲା ସୁବ୍ରତ । ସୁବ୍ରତ ବାଲ୍ୟକାଳରୁ ଭଗବାନଙ୍କର ଅନନ୍ୟ ଭକ୍ତ ଥିଲା । ଖେଳବୁଲ କଲାବେଳେ ତା' ମନ ଭଗବାନ ବିଷ୍ଣୁଙ୍କ ଧ୍ୟାନରେ ମଗ୍ନ ରହୁଥାଏ । ମାଆ ସୁମନା ତାକୁ ଖାଇବାକୁ ଡାକିଲେ ସେ କହେ—''ମାଆ! ଭଗବାନଙ୍କ ଧ୍ୟାନ ଅମୃତ ସଦୃଶ, ମୁଁ ସର୍ବଥା ତାହାକୁ ପାନ କରି ତୃପ୍ତ ରହୁଛି!'' ତାକୁ କିଛି ମିଠାଇ ଖାଇବାକୁ ଦେଲେ ପ୍ରଥମେ ସେ ଭଗବାନଙ୍କୁ ଅର୍ପଣ କରି କହେ—''ଏଥିରେ

ଭଗବାନ ତୃପ୍ତ ହୁଅନ୍ତୁ।'' ସେ ଶୋଇଲାବେଳେ ଭଗବାନଙ୍କୁ ଚିନ୍ତନ କରି କହେ—''ମୁଁ ଯୋଗନିଦ୍ରାପରାୟଣ ଭଗବାନ ଶ୍ରୀକୃଷ୍ଣଙ୍କର ଶରଣାପନ୍ନ।'' ଏହିପରି ଭୋଜନ, ବସ୍ତ୍ରଧାରଣ, ଶୟନ ଓ ଜାଗରଣ ପ୍ରତ୍ୟେକ ସମୟରେ ସେ ଭଗବାନଙ୍କ ଚିନ୍ତନରେ ମନ ଦେଉଥିଲା ଏବଂ ସମସ୍ତ ବସ୍ତୁକୁ ଭଗବାନଙ୍କୁ ଅର୍ପଣ କରୁଥିଲା। ଯୁବାବସ୍ଥା ହେବାପରେ ବି ସେ ଭୋଗରେ ଆସକ୍ତ ନ ହୋଇ, ଭୋଗ ତ୍ୟାଗ କରି ଭଗବାନଙ୍କ ଭଜନରେ ମଗ୍ନ ରହିଲା। ତା'ର ଏପରି ଭକ୍ତିରେ ପ୍ରସନ୍ନ ହୋଇ ଭଗବାନ ବିଷ୍ଣୁ ତା' ଆଗରେ ଆବିର୍ଭୂତ ହେଲେ। ଭଗବାନ ତାକୁ ବର ମାଗିବାକୁ କହିବାରୁ ସେ କହିଲା—''ପ୍ରଭୁ! ଯଦି ଆପଣ ମୋ ଉପରେ ପ୍ରସନ୍ନ, ତେବେ ମୋର ପିତାମାତାଙ୍କୁ ସଶରୀରେ ଆପଣଙ୍କ ପରମଧାମକୁ ନେଇଯାଆନ୍ତୁ ଏବଂ ମୋ ସହିତ ମୋ ପତ୍ନୀକୁ ମଧ୍ୟ ଆପଣଙ୍କ ଧାମକୁ ନେଇଯାଆନ୍ତୁ।'' ଭଗବାନ ସୁବ୍ରତଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ 'ତଥାସ୍ତୁ' କହିଲେ। ଏହିଭଳି ପୁତ୍ରର ଭକ୍ତି ପ୍ରଭାବରୁ ସୋମଶର୍ମା ଓ ସୁମନା ମଧ୍ୟ ଭଗବଦ୍ଧାମ ପ୍ରାପ୍ତ ହେଲେ।

ଏହି ଆଖ୍ୟାନରେ ଗୋଟିଏ ବିଶେଷ କଥା ହେଲା, ସଂସାରରେ କାହାର ଋଣ ପରିଶୋଧ କରିବା ପାଇଁ ଏବଂ କାହାଠାରୁ ଋଣ ଆଦାୟ କରିବା ପାଇଁ ହିଁ ଜନ୍ମ ମିଳେ; କାରଣ ଏ ଜୀବ ଅନେକଙ୍କ ଠାରୁ ନେଇଛି ଏବଂ ଅନେକଙ୍କୁ ଦେଇଛି। 'ନେବା-ଦେବା'ର ଏପରି ବ୍ୟବହାର ଅନେକ ଜନ୍ମରୁ ହୋଇ ଆସୁଛି। ଏହାକୁ ସ୍ଥଗିତ ନ କଲା ପର୍ଯ୍ୟନ୍ତ ଜନ୍ମମରଣରୁ ମୁକ୍ତି ମିଳିବା ସମ୍ଭବ ନୁହେଁ।

ସଂସାରରେ ଯେଉଁମାନଙ୍କ ସହିତ ଆମର ସମ୍ବନ୍ଧ ଅଛି, ସେହି ମାତା, ପିତା, ସ୍ତ୍ରୀ, ପୁତ୍ର ତଥା ପଶୁ, ପକ୍ଷୀ ଆଦି ସମସ୍ତେ 'ଦେବା-ନେବା' ପାଇଁ ହିଁ ଆସିଛନ୍ତି। ତେଣୁ ମନୁଷ୍ୟ ସେମାନଙ୍କ ପ୍ରତି ମୋହ ଓ ମମତା ନ କରି ନିଜର କର୍ତ୍ତବ୍ୟ ପାଳନ କରୁ ଅର୍ଥାତ୍ ସେମାନଙ୍କର ସେବା କରୁ, ସେମାନଙ୍କୁ ଯଥାଶକ୍ତି ସୁଖ ଦେଉ। ଏଠାରେ ସନ୍ଦେହ ହୋଇପାରେ, ଯଦି ଆମେ ଅନ୍ୟ କାହା ସହିତ ଶତ୍ରୁ ପରି ବ୍ୟବହାର କରୁଛେ, ତେବେ ଆମକୁ ଦୋଷ ଲାଗୁଛି କାହିଁକି? ଏପରି ବ୍ୟବହାର ତ ଆମେ ପୂର୍ବଜନ୍ମର

ଋଣାନୁବନ୍ଧ ଯୋଗୁଁ କରୁ? ଏହାର ସମାଧାନ ହେଲା, ମନୁଷ୍ୟଶରୀର ହେଉଛି ବିବେକପ୍ରଧାନ। ତେଣୁ ନିଜ ବିବେକକୁ ମହତ୍ତ୍ୱ ଦେଇ ଆମ ସହିତ ମନ୍ଦ ବ୍ୟବହାର କରୁଥିବା ବ୍ୟକ୍ତିକୁ ଆମେ କ୍ଷମା କରିଦେଇ ପାରିବା ଏବଂ ପ୍ରତିବଦଳରେ ତା'ସହିତ ଉତ୍ତମ ବ୍ୟବହାର କରି ପାରିବା*। ମନୁଷ୍ୟଶରୀର ପ୍ରତିଶୋଧ ନେବା ପାଇଁ ମିଳି ନାହିଁ, ବରଂ ଜନ୍ମମୃତ୍ୟୁରୁ ସବୁଦିନ ଲାଗି ମୁକ୍ତ ହେବା ପାଇଁ ମିଳିଛି। ଯଦି ଆମେ ପୂର୍ବଜନ୍ମର ଋଣାନୁବନ୍ଧ ଅନୁସାରେ 'ଦେବା-ନେବା'ର ବ୍ୟବହାର କରୁଥିବା, ତେବେ କଦାପି ଜନ୍ମମରଣରୁ ମୁକ୍ତ ହୋଇ ପାରିବା ନାହିଁ। 'ଦେବା-ନେବା' ବ୍ୟବହାର ସ୍ଥଗିତ କରିବାର ଉପାୟ ହେଉଛି, ନିଃସ୍ୱାର୍ଥଭାବରେ ଅନ୍ୟମାନଙ୍କ ହିତ ପାଇଁ କର୍ମ କରିବା। ଅନ୍ୟମାନଙ୍କ ହିତ ଉଦ୍ଦେଶ୍ୟରେ କର୍ମ କଲେ ପୂର୍ବର ଋଣ ସମାପ୍ତ ହୋଇଯାଏ ଏବଂ ପ୍ରତିବଦଳରେ କିଛି ଆଶା ନ ରଖିଲେ ନୂତନ ଋଣ ଉତ୍ପନ୍ନ ହୁଏ ନାହିଁ। ଏହିଭଳି ଋଣରୁ ମୁକ୍ତ ହୋଇଗଲେ ମନୁଷ୍ୟ ଜନ୍ମମରଣରୁ ମୁକ୍ତ ହୋଇଯାଏ।

ଯଦି ମନୁଷ୍ୟ ଭକ୍ତ ସୁବ୍ରତ ପରି ସର୍ବଭାବରେ ଭଗବାନଙ୍କ ଭଜନରେ ମନ ଦିଏ, ତେବେ ତା'ର ସମସ୍ତ ଋଣ ସମାପ୍ତ ହୋଇଯିବ ଅର୍ଥାତ୍ ସେ କାହାର ହେଲେ ଋଣୀ ହୋଇ ରହିବ ନାହିଁ*। ଭଗବଦ୍‌ଭଜନ ପ୍ରଭାବରୁ ସେ ସମସ୍ତ ଋଣରୁ ମୁକ୍ତ ହୋଇ ସବୁଦିନ ପାଇଁ ଜନ୍ମମରଣ ଚକ୍ରରୁ ମୁକୁଳିଯିବ ଏବଂ ଭଗବାନଙ୍କ ପରମଧାମ ପ୍ରାପ୍ତ ହେବ।



* ଉମା ସଂତ କଇ ଇହଇ ବଡ଼ାଈ। ମଂଦ କରତ ଜୋ କରଇ ଭଲାଈ॥
(ମାନସ ୫।୪୧।୪)

* ଦେବର୍ଷିଭୂତାପ୍ତନୃଣାଂ ପିତୃଣାଂ ନ କିଙ୍କରୋ ନାୟମୃଣୀ ଚ ରାଜନ୍।
ସର୍ବାତ୍ମନା ଯଃ ଶରଣଂ ଶରଣ୍ୟଂ ଗତୋ ମୁକୁନ୍ଦୋ ପରିହୃତ୍ୟ କର୍ତ୍ତମ୍॥
(ଶ୍ରୀମଭା. ୧୧।୫।୪୧)

## ୨୭. ଶୁଦ୍ଧ ଉପାର୍ଜନ

ଜଣେ ଅତ୍ୟନ୍ତ ସଦାଗ୍ରରୀ ବିଦ୍ୱାନ୍ ବ୍ରାହ୍ମଣ ଥିଲେ। ତାଙ୍କ ଘରେ ପ୍ରାୟ ଖାଇବା-ପିନ୍ଧିବାର ଅସୁବିଧା ଲାଗି ରହୁଥିଲା। ସେ ସାଧାରଣଭାବରେ ଜୀବନନିର୍ବାହ କରୁଥିଲେ। ସେହି ଦେଶର ରାଜା ବଡ଼ ଧର୍ମାତ୍ମା ଥିଲେ। ବ୍ରାହ୍ମଣୀ କେତେଥର ନିଜ ପତିଙ୍କୁ ରାଜାଙ୍କ ସହିତ ଦେଖାକରି ଆସିବା ପାଇଁ କହୁଥାଏ, କିନ୍ତୁ ସେଠାକୁ ଯିବାକୁ ବ୍ରାହ୍ମଣଙ୍କର ମନ ନ ଥାଏ। ଦିନେ ବ୍ରାହ୍ମଣୀ କହିଲା—"ମୁଁ ତୁମକୁ ମାଗିବା ପାଇଁ ଯାଅ ବୋଲି କହୁନି। ତୁମେ କିଛି ନ ମାଗିଲ ନାହିଁ, ଖାଲି ଥରେ ଦେଖା କରି ଆସ।" ବେଶୀ ବାଧ୍ୟ କରିବାରୁ ତା' ମନ ରଖିବା ପାଇଁ ବ୍ରାହ୍ମଣ ରାଜାଙ୍କ ପାଖକୁ ଗଲେ। ରାଜା ତାଙ୍କୁ ବଡ଼ ତ୍ୟାଗୀ ଗୃହସ୍ଥ ବ୍ରାହ୍ମଣ ଜାଣି ଖୁବ୍ ଆଦର-ସତ୍କାର କଲେ ଏବଂ ଆଉ ଦିନେ ଆସିବା ପାଇଁ ଅନୁରୋଧ କଲେ। ରାଜା କହିଲେ—"ଏବେ ତ ଆପଣ ନିଜ ଇଚ୍ଛାରେ ଆସିଛନ୍ତି, ମୋ କଥା ରଖି, ମୋ ଉପରେ କୃପା କରି ଆଉ ଦିନେ ଆସନ୍ତୁ।" ରାଜା ଏପରି କହି ତାଙ୍କର ପୂଜା କଲେ ଏବଂ ଆନନ୍ଦର ସହିତ ବିଦା କରାଇଲେ। ଘରେ ପହଞ୍ଚିବାରୁ ବ୍ରାହ୍ମଣୀ ପଗ୍ରରିଲା—ରାଜା କ'ଣ ଦେଲେ? ବ୍ରାହ୍ମଣ କହିଲେ—"ଦେବେ କ'ଣ? ସେ ଆଉ ଦିନେ ଯିବା ପାଇଁ କହିଛନ୍ତି।" ବ୍ରାହ୍ମଣୀ ଭାବିଲା, ଏଥର ନିଶ୍ଚୟ କିଛି ମାଲ୍ ମିଳିବ। ରାଜା ନିମନ୍ତ୍ରଣ ଦେଇଛନ୍ତି ମାନେ ଅବଶ୍ୟ କିଛି ଦେବେ।

ଦିନେ ରାତିରେ ରାଜା ଛଦ୍ମବେଶ ଧରି, ଗରିବ ଲୋକଙ୍କ ଭଳି ଛିଣ୍ଡା ଲୁଗା ପିନ୍ଧି ବୁଲିଲେ। ଥଣ୍ଡା ଦିନ। ଜଣେ କମାର ଗୋଟେ ଲୁହାର କଡ଼େଇ ତିଆରି କରୁଥିଲା। ଲୁହା ଗରମ କରି ସାରିଲା ପରେ ତାହାକୁ ଲେହିରେ ରଖି ବାଡ଼େଇବା ପାଇଁ ତା'ର ଜଣେ ଲୋକ ଦରକାର ହେଉଥିଲା। ରାଜା ସେହି କାମ କରିବାକୁ ପ୍ରସ୍ତୁତ ହୋଇଗଲେ। ଘଣ୍ଟାକୁ ଦି' ପଇସା ମୂଲ ବୋଲି କମାର କହିଲା। ରାଜା ଅତି ଉତ୍ସାହ

ଓ ତତ୍ପରତାର ସହ ଦୁଇ ଘଣ୍ଟା କାମ କଲେ । ରାଜାଙ୍କ ହାତରେ ବିଣ୍ଡି ହୋଇଗଲା, ଝାଳ ବାହାରିଲା, ହାଡ଼ଭଙ୍ଗା ପରିଶ୍ରମ । କମାର ଶେଷକୁ ଚାରି ପଇସା ଦେଲା । ରାଜା ସେହି ଚାରି ପଇସା ଧରି ଘରକୁ ଆସିଲେ ଓ ହାତରେ ବ୍ୟାଣ୍ଡେଜ କଲେ । ଧୀରେ ଧୀରେ ହାତଘାଆ ଭଲ ହୋଇଗଲା ।

ଦିନେ ବ୍ରାହ୍ମଣୀ କହିବାରୁ ବ୍ରାହ୍ମଣ ପୁଣି ଥରେ ରାଜାଙ୍କ ପାଖକୁ ଆସିଲେ । ରାଜା ଅତି ଆଦର କରି ଆସନ ଦେଲେ, ପୂଜା କଲେ ଏବଂ ସେହି ଚାରି ପଇସା ତାଙ୍କୁ ଭେଟି ଦେଲେ । ବ୍ରାହ୍ମଣ ବଡ଼ ସନ୍ତୋଷୀ ଥିଲେ । ସେ ସେହି ଚାରି ପଇସା ଧରି ଘରେ ପହଞ୍ଚିଲେ । ବ୍ରାହ୍ମଣୀ ଭାବୁଥିଲା ଯେ, ରାଜା ଆଜି ଯଥେଷ୍ଟ ଧନ ଦେବେ । ସେ ଚାରିଟା ପଇସାକୁ ଦେଖି ରାଗିଯାଇ କହିଲା—"ରାଜା କ'ଣଟା ଦେଲା ଆଉ ତୁମେ କ'ଣଟା ଆଣିଲ । ତୁମ ଭଳି ପଣ୍ଡିତଙ୍କୁ ରାଜା ଏଇଆ ଦେଇଛି!" ବ୍ରାହ୍ମଣୀ ସେହି ଚାରିଟା ପଇସା ବାହାରକୁ ଫିଙ୍ଗିଦେଲା । ସକାଳୁ ଉଠି ଦେଖିଲା ବେଳକୁ ସେଠାରେ ଗୋଟିଏ ଗଛ ହୋଇ ସେଥିରେ ଚାରୋଟି ସୁନା ମୋହର ଫଳିଛି । ଶୁଦ୍ଧ ଧନ ଏମିତି ହୋଇଯାଏ । ସେହି ସୁନାଟଙ୍କାକୁ ସେମାନେ ପ୍ରତିଦିନ କାଟି ନେଉଥିଲେ, ପୁଣି ପରଦିନକୁ ତାହା କଅଁଳି ଆସୁଥିଲା । ତାହାକୁ ତାଡ଼ି ଦେଖିଲା ବେଳକୁ ମୂଳରେ ସେହି ଚାରୋଟି ପଇସା ମିଳିଲା!

ରାଜା ବ୍ରାହ୍ମଣଙ୍କୁ ଅନ୍ନ ଦେଲେ ନାହିଁ; କାରଣ ରାଜାଙ୍କ ଅନ୍ନ ଅଶୁଦ୍ଧ, ଖରାପ ପଇସାରୁ ଉପାର୍ଜିତ ହୋଇଥାଏ । ମଦ ଆଦି ମାଦକ ଦ୍ରବ୍ୟ ଉପରେ ଲଗାଯାଉଥିବା କର, ଚୋରଙ୍କୁ ଦଣ୍ଡ ଦେଇ ଆଣିଥିବା ଧନ ଅଶୁଦ୍ଧ । ଏପରି ଧନ ଦେଇ ବ୍ରାହ୍ମଣଙ୍କୁ ଭ୍ରଷ୍ଟ କରିବା ଉଚିତ ନୁହେଁ । ତେଣୁ ରାଜା ନିଜ ଶୁଦ୍ଧ ଉପାର୍ଜନର ପଇସା ଦେଲେ । ଆପଣମାନେ ମଧ୍ୟ ଧାର୍ମିକ ଅନୁଷ୍ଠାନ ପ୍ରଭୃତିରେ ନିଜର ଶୁଦ୍ଧ ଉପାର୍ଜନର ଧନ ଖର୍ଚ୍ଚ କରନ୍ତୁ ।



## ୨୮. ଅନ୍ୟର ସ୍ୱତ୍ୱ

ଅନ୍ୟମାନଙ୍କ ସ୍ୱତ୍ୱ ଯେପରି ଆମ ପାଖକୁ ନ ଆସିବ, ସେଥିପ୍ରତି ମନୁଷ୍ୟ ଅତ୍ୟନ୍ତ ସାବଧାନ ରହିବା ଉଚିତ। ନିଜ ଶୁଦ୍ଧ ଉପାର୍ଜନର ଅନ୍ନ ଭକ୍ଷଣ କଲେ ଅନ୍ତଃକରଣ ନିର୍ମଳ ହେବ ଏବଂ ଚୋରି, ଠକାମି, ବିଶ୍ୱାସଘାତକତା ଓ ଅନ୍ୟାୟରୁ ଉପାର୍ଜିତ ଅନ୍ନ ଭକ୍ଷଣ କଲେ ଅନ୍ତଃକରଣ ଅତ୍ୟନ୍ତ ଅଶୁଦ୍ଧ ହୋଇଯିବ।

ଆଜିକାଲି ଟ୍ୟାକ୍ସ ବହୁତ ବଢ଼ିଯିବାରୁ ବ୍ୟବସାୟ ଇତ୍ୟାଦିରେ ଲୋକେ ଚୋରି ଓ କପଟ କରୁଛନ୍ତି। ଓକିଲ ଯେପରି ଶିଖାଉଛି, ସେହିପରି କରି ଧନ ରକ୍ଷା ପାଇଁ ଚେଷ୍ଟା କରୁଛନ୍ତି। ଏପରି କରି ଧନ ରକ୍ଷା କଲେ ଅନ୍ତଃକରଣ କେତେ ଯେ ମଳିନ ହୋଇଯିବ, ତାହା ସେମାନେ ବିଚାର କରୁ ନାହାନ୍ତି! ଜଣେ ସନ୍ଥ କହୁଥିଲେ—ଶୁଦ୍ଧ ଉପାର୍ଜନର ଧନରୁ ଅତ୍ୟନ୍ତ ପବିତ୍ରତା ଆସେ। ତାଙ୍କ ପାଖକୁ ଜଣେ ରାଜା ଆସୁଥିଲେ। ଥରେ ରାଜା ପଚାରିଲେ—''ଆଜ୍ଞା! ଆପଣଙ୍କ ପାଖକୁ ବହୁତ ଲୋକ ଆସୁଛନ୍ତି ଏବଂ ଆପଣ ମଧ୍ୟ କେତେକ ଲୋକଙ୍କ ଘରକୁ ଭିକ୍ଷା କରିବା ପାଇଁ ଯାଉଛନ୍ତି। ଆପଣଙ୍କ ଦୃଷ୍ଟିରେ ଏପରି କେହି ଅଛନ୍ତି କି, ଯାହାଙ୍କର ଅନ୍ନ ଶୁଦ୍ଧ ଉପାର୍ଜନରୁ ପ୍ରସ୍ତୁତ ହୋଇଥିବ? ଯଦି ଆପଣଙ୍କ ଦୃଷ୍ଟିରେ ଏପରି କେହି ଥାଆନ୍ତି, ତେବେ ଆପଣ ଦୟା କରି ମୋତେ କହିବେ?'' ସନ୍ଥ କହିଲେ—''ଅମୁକ ଜାଗାରେ ଜଣେ ବୁଢ଼ୀ ରହୁଛି, ତା' ଘରର ଅନ୍ନ ଅତ୍ୟନ୍ତ ଶୁଦ୍ଧ। ସେ ସୂତାକାଟି ଚଳୁଛି। ତା' ପାଖରେ ଧନ ନାହିଁ। ସାଧାରଣ ଚାଳଘର ଖଣ୍ଡିଏ; କିନ୍ତୁ ସେ ଅନ୍ୟର ସ୍ୱତ୍ୱ ଗ୍ରହଣ କରୁନି।'' ଏହା ଶୁଣି ରାଜା ମନରେ ଭାବିଲେ ଯେ, କୌଣସି ପ୍ରକାରେ ତାଙ୍କ ଘରର ଅନ୍ନ ମିଳିଗଲେ ବହୁତ ଭଲ ହୁଅନ୍ତା! ରାଜା ନିଜେ ଭିକାରି ବେଶ ଧରି ସେହି ବୁଢ଼ୀ ଘରେ ପହଞ୍ଚିଲେ ଏବଂ କହିଲେ—''ମାଆ! କିଛି ଭିକ୍ଷା ମିଳୁ।'' ବୁଢ଼ୀ ଘରୁ ଚାଉଳ ମୁଠିଏ ଆଣିଲା ଏବଂ କହିଲା—''ପୁଅରେ!

ଏଇ ନିଅ ତୁମ ଭିକ୍ଷା।'' ରାଜା ପଚାରିଲେ—''ମାଆ! ଗୋଟିଏ କଥା ପଚାରିବି; ଏ ଭିକ୍ଷା ଶୁଦ୍ଧ ତ? ଏଥିରେ କାହାରି ସ୍ୱତ୍ୱ ନାହିଁ ତ? ବୁଢ଼ୀ କହିଲା—''ପୁଅରେ! ଏହା ପୂରାପୂରି ଶୁଦ୍ଧ ନୁହେଁ; ଏଥିରେ କିଛିଟା ଅନ୍ୟର ସ୍ୱତ୍ୱ ରହିଛି! ଦିନେ ରାତିରେ ବରଯାତ୍ରୀମାନେ ଯାଉଥିଲେ। ସେମାନେ ପେଟ୍ରୋମାକ୍ସଲାଇଟ୍ ଧରି ଯାଉଥିଲେ। ସେହି ଆଲୁଅରେ ମୁଁ ସୂତା କାଟିଥିଲି। କେବଳ ଏତିକି ଅନ୍ୟର ସ୍ୱତ୍ୱ ରହିଯାଇଛି। ଏହା ଛଡ଼ା ମୋ ଉପାର୍ଜନରେ ଅନ୍ୟ କୌଣସି ଦୋଷ ନାହିଁ।'' ରାଜା ବଡ଼ ଆଶ୍ଚର୍ଯ୍ୟ ହେଲେ ଯେ, ଏତିକି ଦୋଷ ପ୍ରତି ବି ବୁଢ଼ୀର ଲକ୍ଷ୍ୟ ରହିଛି! ଅନ୍ୟମାନଙ୍କ ଆଲୁଅରେ ଆମର ସୂତା କାଟିବାର କି ଅଧିକାର?



## ୨୯. ଦୁର୍ଗତିର କାରଣ

ଶରୀର ବହୁତ ପ୍ରିୟ ଲାଗୁଛି, ମାତ୍ର ତାହା ଚ୍ୱଲିଯିବ। ଯାହା ଚ୍ୱଲିଯିବ, ତା'ଠାରୁ ପ୍ରଥମରୁ ହିଁ ମୋହ ମମତା ତୁଟାଇ ଦିଅନ୍ତୁ। ଯଦି ପ୍ରଥମରୁ ତୁଟାଇ ନାହାନ୍ତି, ତେବେ ପଛକୁ ବଡ଼ ଦୁର୍ଦଶା ହେବ। ଯଦି ଭୋଗରେ, ଧନରେ ବା ପଦାର୍ଥରେ ଆସକ୍ତି ରହିଗଲା, ସେଥିରେ ମନ ରହିଗଲା, ତେବେ ବଡ଼ ଦୁର୍ଦଶା ହେବ। ସାପ ଓ ଅଜଗର ହେବାକୁ ପଡ଼ିବ; ଜଣାନାହିଁ ଭୂତ, ପ୍ରେତ, ପିଶାଚ ପ୍ରଭୃତି କେତେ କ'ଣ ହେବାକୁ ପଡ଼ିବ!

ଜଣେ ସନ୍ଥଙ୍କ କଥା ମୁଁ ଶୁଣିଛି। ସେ ବିରକ୍ତ (ଅନାସକ୍ତ) ଓ ତ୍ୟାଗୀ ଥିଲେ। ଟଙ୍କାପଇସା ସ୍ପର୍ଶ କରୁ ନ ଥିଲେ ଏବଂ ଏକାନ୍ତରେ ବସି ଭଜନ କରୁଥିଲେ। ଜଣେ ସଜ୍ଜନ ତାଙ୍କର ସେବା କରନ୍ତି, ପ୍ରତିଦିନ ଭୋଜନ ପ୍ରଭୃତି ଆଣି ଦିଅନ୍ତି। ଥରେ କୌଣସି ଜରୁରୀ କାମରେ ତାଙ୍କୁ ଦୂରକୁ ଯିବାକୁ ପଡ଼ିଲା। ତେଣୁ ସେ ସନ୍ଥଙ୍କୁ କହିଲେ, "ଆଜ୍ଞା! ମୁଁ ତ ଯାଉଛି, ଆପଣଙ୍କର ସେବା କିଏ କରିବ?" ସନ୍ଥ କହିଲେ, "ଆରେ ଭାଇ! ମୋ ସେବା ତୁମର ଅଧୀନ ନୁହେଁ, ତୁମେ ଯାଅ!" ସେ କହିଲେ, "ପରେ କିଏ ସେବା କରିବ କି ନ କରିବ ଜଣାନାହିଁ, ତେଣୁ ମୁଁ କୋଡ଼ିଏ ଟଙ୍କା ଏଇଠି ରଖିଦେଇ ଯାଉଛି। କାମ ପଡ଼ିଲେ କାହାକୁ କହିବେ।" ବାବାଜୀ ନାହିଁ ନାହିଁ କରୁଥିଲେ, ମାତ୍ର ସେ ରଖିଦେଇ ଚ୍ୱଲିଗଲେ। କିଛିଦିନ ପରେ ବାବାଜୀ ରୋଗରେ ପଡ଼ିଲେ ଏବଂ ମରିଗଲେ। ମୃତ୍ୟୁପରେ ସେ ଭୂତ ହେଲେ। ରାତିରେ କେହି ସେଠାରେ ରହିଲେ କଠଉର ଠକ୍ ଠକ୍ ଶବ୍ଦ ଶୁଭେ। ଲୋକେ ଭାବି ପାରନ୍ତି ନାହିଁ ଯେ ଘଟଣା କ'ଣ? ଯେତେବେଳେ ସେହି ସଜ୍ଜନ ଜଣକ ଫେରିଲେ ତାଙ୍କୁ ଏ କଥା କୁହାଗଲା ଯେ ରାତିରେ କଠଉର ଶବ୍ଦ ଶୁଭୁଛି, ବୋଧହୁଏ ସେଠାରେ କୌଣସି ଭୂତ ବା ପ୍ରେତ ଅଛି;

କିନ୍ତୁ ସେ କାହାରିକୁ ହଇରାଣ କରୁ ନାହିଁ । ସେହି ସଜ୍ଜନ ଜଣକ ରାତିରେ ସେଠାରେ ରହିଲେ । ଏ କଥା ଜାଣି ତାଙ୍କୁ ବହୁତ ଦୁଃଖ ହେଲା । ସେ ନିବେଦନ କରିବାରୁ ବାବାଜୀ ଦେଖାଦେଲେ ଓ କହିଲେ, "ମରିବା ସମୟରେ ତୁମ ଟଙ୍କା ଆଡ଼କୁ ମୋର ମନ ଗ୍ଲି ଯାଇଥିଲା । ଏବେ ତୁମେ ଏଗୁଡ଼ିକୁ ଖର୍ଚ୍ଚ କରିଦେଲେ ମୁଁ ମୁକ୍ତ ହୋଇଯିବି ।" ବାବାଜୀ ସେ ଟଙ୍କାକୁ କାମରେ ଲଗାଇ ନ ଥିଲେ ସିନା, ହେଲେ 'ତାହା ମୋ ପାଇଁ ପଡ଼ି ରହିଛି' ଏତିକି ଭାବନାରୁ ତାଙ୍କପରି ସନ୍ଥଙ୍କର ଏପରି ଦଶା ହେଲା । ସେହି ଟଙ୍କାକୁ ସେଠାରୁ ଆଣି କୌଣସି ଧାର୍ମିକ କାର୍ଯ୍ୟରେ ଲଗାଇ ଦିଆଯିବାରୁ ବାବାଜୀଙ୍କର ଗତି ବା ମୁକ୍ତି ହେଲା ।

ବୃନ୍ଦାବନର ଗୋଟିଏ ଘଟଣା ମୁଁ ଶୁଣିଛି । ଜଣେ ଭିକାରି ପଇସା ମାଗି ଚଳୁଥାଏ । ତା' ପାଖରେ ପ୍ରାୟ ଏକଟଙ୍କା ହୋଇ ଯାଇଥିଲା । କିଛି ଦିନ ପରେ ସେ ମରିଗଲା । ତା'ର ଯେଉଁ ଛିଣ୍ଡା କନାଗୁଡ଼ିକ ପଡ଼ିଥିଲା, ସେଠାରେ ଏକ ଛୋଟ ସାପ ରହୁଥିବାର ଲୋକେ ଦେଖିଲେ । ସାପଟିକୁ ଅନେକ ଥର ଦୂରକୁ ଫୋପାଡ଼ି ଦିଆଗଲା, ହେଲେ ସେ ବାରମ୍ବାର ସେଇ ଛିଣ୍ଡାକନା ପାଖକୁ ଆସି ଗୁଞ୍ଜି ହୋଇ ରହିଲା । ସାପଟି ନ ଯାଉଥିବାରୁ ସମସ୍ତେ ଆଶ୍ଚର୍ଯ୍ୟ ହେଲେ! ଭାବିଲେ ଘଟଣା କ'ଣ? ସାପଟିକୁ ପୁଣି ଫୋପାଡ଼ି ଦେଇ ଦେଖିବାରୁ ଛିଣ୍ଡାକନା ଭିତରୁ କିଛି ପଇସା ମିଳିଲା । ସେହି ପଇସା କୌଣସି କାମରେ ଲଗାଇ ଦେବାପରେ ଆଉ ସେଠାରେ ସାପଟି ଦେଖିବାକୁ ମିଳିଲା ନାହିଁ ।

ଅନ୍ତରରେ ଥିବା ବାସନା ଅତ୍ୟନ୍ତ ଭୟଙ୍କର । ଯେତେବେଳେ ବସ୍ତୁ ପ୍ରତି ପ୍ରିୟତ୍ୱ ବା ଆକର୍ଷଣ ହୁଏ, ସେତେବେଳେ ବାସନା ସ୍ଥାନ ଅଧିକାର କରେ । ବସ୍ତୁର ପ୍ରିୟତ୍ୱ ବା ଆକର୍ଷଣ ସ୍ଥାନରେ ଭଗବାନଙ୍କ ପ୍ରତି ସ୍ନେହ ଜାତ ହେବା ଉଚିତ ।



## ୩୦. ଆଦର୍ଶ ମାଆ

କୌଣସି ଗ୍ରାମରେ ମୁସଲମାନ ଘରେ ଗୋଟିଏ ଶିଶୁ ଜନ୍ମ ହେଲା। ଶିଶୁ ଜନ୍ମ ହେବା ପରେ ପରେ ତା'ର ମାଆ ମରିଗଲା। ମୁସଲମାନ ଜଣକ ଦୁଃଖରେ ବ୍ୟସ୍ତ ହୋଇପଡ଼ିଲା। ପ୍ରଥମତଃ ପତ୍ନୀ ମରିବାର ଦୁଃଖ, ତା'ସାଙ୍ଗକୁ ଶିଶୁର ଲାଳନପାଳନ କରିବାର ଚିନ୍ତାକୁ ନେଇ ଦୁଃଖ! ପଡ଼ିଶାଘରେ ଜଣେ ଗଉଡ଼ ରହୁଥିଲା। ତା'ର ମଧ୍ୟ ଦୁଇ ତିନି ଦିନର ଗୋଟିଏ ଶିଶୁ ଜନ୍ମ ହୋଇଥାଏ। ତା' ପତ୍ନୀକୁ ଏ ଘଟଣା ଜଣାପଡ଼ିବାରୁ ସେ ତା' ସ୍ୱାମୀକୁ କହିଲା, "ତୁମେ ସେହି ପିଲାଟିକୁ ନେଇ ଆସ, ମୁଁ ତା'ର ପାଳନପୋଷଣ କରିବି।" ଗଉଡ଼ ଜଣକ ମୁସଲମାନର ପିଲାଟିକୁ ନିଜ ଘରକୁ ନେଇ ଆସିଲା। ଗଉଡ଼ର ପତ୍ନୀ ପିଲାଟିକୁ ସ୍ତନ୍ୟପାନ କରାଇ ଅତି ସ୍ନେହ ଓ ପ୍ରେମର ସହିତ ପାଳନ କଲା। ତା' ମନରେ ନିଜ ପିଲା ଓ ସେହି ମୁସଲମାନର ପିଲା ପ୍ରତି ଭେଦଭାବ ନ ଥିଲା। ପିଲାଟି ଟିକେ ବଡ଼ ହୋଇ ପଢ଼ିବା ପାଇଁ ଯୋଗ୍ୟ ହୋଇଯିବାରୁ ଗଉଡ଼ ଜଣକ ମୁସଲମାନକୁ ଡାକି କହିଲା—ଏବେ ତୁମେ ତୁମ ପୁଅକୁ ନେଇପାର ଏବଂ ପାଠ ପଢ଼ାଇ ନିଜ ଇଚ୍ଛାନୁସାରେ ବଡ଼ ମଣିଷ କରିପାର। ସେ ପିଲାଟିକୁ ନେଇ ପାଠ ପଢ଼ାଇଲା। ଶିକ୍ଷିତ ହୋଇ ପିଲାଟି କୌଣସି ଡାକ୍ତରଖାନାରେ କମ୍ପାଉଣ୍ଡର ଭାବରେ ନିଯୁକ୍ତି ପାଇଲା। ଏପଟେ ଦୈବାତ୍ ଗଉଡ଼ର ପତ୍ନୀର ଛାତିରେ କିଛି ରୋଗ ହେଲା। ତା' ଛାତି ଭିତରେ ଘାଆ ହୋଇ ଯାଇଥିଲା। ଚିକିତ୍ସା ପାଇଁ ତାକୁ ଡାକ୍ତରଖାନାକୁ ନିଆଗଲା। ଡାକ୍ତର ରୋଗ ଚିହ୍ନି ରୋଗୀକୁ ରକ୍ତ ଦିଆଗଲେ ରୋଗ ଭଲ ହୋଇଯିବ ବୋଲି କହିଲେ। କାହାର ରକ୍ତ ରୋଗୀ ରକ୍ତ ସହିତ ମିଶି ପାରିବ—ଏଥିନେଇ ପରୀକ୍ଷା କରାଗଲା। ଦୈବଯୋଗେ ମୁସଲମାନର ଯେଉଁ ପିଲାଟି ସେହି ଡାକ୍ତରଖାନାରେ କମ୍ପାଉଣ୍ଡର ହୋଇଥିଲା, ତା' ରକ୍ତ ମିଶିଲା। ଗଉଡ଼ର ପତ୍ନୀ ତ ସେହି ପିଲାଟିକୁ ଚିହ୍ନି ପାରୁ ନ ଥିଲା,

କିନ୍ତୁ ପିଲାଟି ବେଶ୍ ଜାଣି ପାରିଥିଲା ଯେ ଏ ତା'ର ପାଳନକାରିଣୀ ମାଆ। ପିଲାବେଳେ ସେ ତା'ଠାରୁ କ୍ଷୀର ପିଇ ବଢ଼ିଥିବାରୁ ରକ୍ତ ସହିତ ରକ୍ତ ମିଶି ପାରିଲା। ଡାକ୍ତର କହିଲେ—ଏହାଙ୍କ ରକ୍ତ ଦିଆଯାଇ ପାରିବ। ତାକୁ ପଚରାଗଲା—ତୁମେ ରକ୍ତ ଦେଇ ପାରିବ କି? ସେ କହିଲା—ମୁଁ ରକ୍ତ ଦେଇ ପାରିବି ଯେ, କିନ୍ତୁ ଦୁଇ ଶହ ଟଙ୍କା ନେବି। ଗଉଡ଼ ଜଣକ ତାକୁ ଦୁଇ ଶହ ଟଙ୍କା ଦେଲା। ସେ ଆବଶ୍ୟକତା ଅନୁସାରେ ରକ୍ତ ଦେଲା। ରୋଗୀକୁ ରକ୍ତ ଦିଆଯିବାରୁ ତା'ର ଦେହ ଭଲ ହୋଇଗଲା ଏବଂ ସେ ଘରକୁ ଚାଲିଗଲା।

କିଛି ଦିନ ପରେ କମ୍ପାଉଣ୍ଡର ହୋଇଥିବା ସେହି ପିଲାଟି ଗଉଡ଼ ଘରକୁ ଯାଇ ହଜାରେ ଦୁଇ ହଜାର ଟଙ୍କା ମାଆ ଚରଣରେ ସମର୍ପିତ କରି କହିଲା—ତୁମେ ମୋର ମାଆ। ମୁଁ ତୁମର ସନ୍ତାନ। ତୁମେ ମୋତେ ପାଳନ କରିଥିଲ। ଏହି ଟଙ୍କା ଗ୍ରହଣ କର। ସେ ମନା କରିବାରୁ ପିଲାଟି ବାଧ୍ୟ କରି କହିଲା ଯେ ତୁମକୁ ଏହା ନେବାକୁ ପଡ଼ିବ। ସେ ଡାକ୍ତରଖାନାର ସମସ୍ତ ଘଟଣା ମନେ ପକାଇ କହିଲା— ମୁଁ ସେତେବେଳେ ଏଇଥିପାଇଁ ଟଙ୍କା ନେଇଥିଲି ଯେ ତୁମେ ତ ସେମିତି ରକ୍ତ ନେଇ ନ ଥାନ୍ତେ, ଏଣେ ରକ୍ତ ନ ନେଇଥିଲେ ତୁମେ ବଞ୍ଚିପାରି ନ ଥାନ୍ତ। ପ୍ରକୃତରେ ଏ ରକ୍ତ ମଧ୍ୟ ତୁମର। ତୁମଠାରୁ କ୍ଷୀର ପିଇ ମୁଁ ବଢ଼ିଛି, ତେଣୁ ମୋର ଏହି ଶରୀର ଓ ସବୁକିଛି ତୁମର। ମୋର ଏହି ଟଙ୍କା ଶୁଦ୍ଧ ଉପାର୍ଜନ। ତୁମ ଦୟାରୁ ମୁଁ ରସୁଣ ଓ ପିଆଜ ମଧ୍ୟ ଖାଏ ନାହିଁ। ଅପବିତ୍ର ଓ ଅଶୁଦ୍ଧ ଖାଦ୍ୟ ପ୍ରତି ମୋର ଅରୁଚି ହୋଇଯାଇଛି। ତେଣୁ ଏହି ଟଙ୍କା ନେବାକୁ ତୁମେ ବାଧ୍ୟ। ଏପରି କହି ସେ ଟଙ୍କା ଦେଇଦେଲା। ଗଉଡ଼ର ପତ୍ନୀ ଶୁଦ୍ଧ ଭାବସମ୍ପନ୍ନ ହୋଇଥିବାରୁ ତା' କ୍ଷୀରର ଏତେ ପ୍ରଭାବ ଥିଲା ଯେ ପିଲାଟି ମୁସଲମାନ ହୋଇଥିଲେ ମଧ୍ୟ ଅପବିତ୍ର ଖାଦ୍ୟ ଖାଉ ନ ଥିଲା।

ଆପଣମାନେ ବିଚାର କରନ୍ତୁ। ମାଆମାନେ ସମସ୍ତେ ନିଜ ନିଜର ସନ୍ତାନମାନଙ୍କୁ ପାଳନ କରନ୍ତି। ଆମ୍ଭମାନଙ୍କର ଲାଳନପାଳନ ମଧ୍ୟ

ମାଆ ଭଉଣୀମାନଙ୍କ ଦ୍ୱାରା ହୋଇଛି। ମାତ୍ର ସେମାନଙ୍କ ଯଶ କଥା କେହି କହୁ ନାହାନ୍ତି, ସେ ବିଷୟରେ କେହି ଆଲୋଚନା କରୁ ନାହାନ୍ତି। ମୁସଲମାନର ପିଲାଟିକୁ ପାଳନ କରିଥିବା ଗଉଡୁଣୀ କଥା ଆମେ ଚର୍ଚ୍ଚା କରୁଛେ। ଆମ ଉପରେ ସେ କଥାର ପ୍ରଭାବ ପଡୁଛି ଯେ ସତରେ ତା' ହୃଦୟରେ କେତେ ଦୟା ପରିପୂର୍ଣ୍ଣ ହୋଇଥିଲା! ତା' ମନରେ ଏପରି ଭେଦଭାବ ନ ଥିଲା ଯେ "ଅନ୍ୟର ପିଲାକୁ ମୁଁ କାହିଁକି ପାଳନ କରିବି?" ତେଣୁ ଆମ୍ଭେମାନେ ଆଜି ତା'ର ଗୁଣ ଗାଉଛେ ଯେ ବାସ୍ତବରେ ସେହି ମାଆ କେତେ ଶ୍ରେଷ୍ଠ, ଯିଏ ପିଲାଟିକୁ ଲାଳନପାଳନ କରି ତା' ନିଜ ବାପାକୁ ଫେରାଇ ଦେଲା! ନିଜ ପିଲାମାନଙ୍କର ପାଳନ ତ କୁକୁର ମଧ୍ୟ କରେ, ଏହା କେଉଁ ବଡ଼ କଥା ଅବା?



## ୩୧. ରାଜାଙ୍କୁ ଉପଦେଶ ପ୍ରଦାନ

ଜଣେ ରାଜା ଥିଲେ। ସେ ଦିନେ ସଂଧ୍ୟାବେଳେ ଛାତ ଉପରେ ବୁଲୁଥିଲେ। ସଙ୍ଗରେ ପାଞ୍ଚ ସାତ ଜଣ ଲୋକ ମଧ୍ୟ ଥିଲେ। ରାଜମହଲ ପଛପଟେ କେତୋଟି ଭଙ୍ଗାଘର ଥିଲା। ଜଣେ ସନ୍ଥ ବେଳେ ବେଳେ ଆସି ସେହି ଭଙ୍ଗାଘରେ ରହୁଥିଲେ। ରାଜା ସେହି ଭଙ୍ଗାଘର ଆଡ଼କୁ ହାତଠାରି ନିଜ ଲୋକମାନଙ୍କୁ ପଚ୍ଚରିଲେ— "ଏଥିରେ ଜଣେ ସନ୍ଥ ଆସି ରହୁଥିଲେ ନା?" ସେମାନେ କହିଲେ— "ହଁ, ମହାରାଜ! ଆସୁଥିଲେ; କିନ୍ତୁ କେତେ ବର୍ଷ ହେଲାଣି ଆଉ କାହିଁ ଆସିବାର ଦେଖାଯାଉ ନାହାନ୍ତି।" ରାଜା କହିଲେ—"ସନ୍ଥ ଜଣକ ବଡ଼ ଅନାସକ୍ତ ଓ ତ୍ୟାଗୀ ଥିଲେ। ତାଙ୍କ ଦର୍ଶନରୁ ଅତି ଶାନ୍ତି ମିଳୁଥିଲା। ସେ ଦେଖାହେଲେ ତାଙ୍କୁ କେତୋଟି କଥା ପଚ୍ଚରନ୍ତେ। ଦେଖିବଟି ସେ କୁଆଡ଼େ ଗଲେ।" ରାଜକର୍ମଚ୍ଚରୀମାନେ ତାଙ୍କୁ ଖୋଜି ଖୋଜି ଶେଷକୁ ଖବର ପାଇଲେ ଯେ ସେ ଚ୍ଚଲିଗଲେଣି, ଆଉ ସଶରୀରେ ନାହାନ୍ତି। ମନୁଷ୍ୟର ବଡ଼ ଭୁଲ୍ ହୁଏ ଯେ, କୌଣସି ବ୍ୟକ୍ତି ବଞ୍ଚିଥିବା ସମୟରେ ସେ ତାଙ୍କଠାରୁ ଶିକ୍ଷା ଗ୍ରହଣ କରେ ନାହିଁ, କିନ୍ତୁ ସେ ମରିଗଲା ପରେ କାନ୍ଦେ। ରାଜା କହିଲେ—"ହାୟ୍! ବଡ଼ ଭୁଲ୍ ହୋଇଗଲା, ଆମେ ତାଙ୍କଠାରୁ କିଛି ଶିକ୍ଷା ଗ୍ରହଣ କରି ପାରିଲେ ନାହିଁ! ଯଦି ତାଙ୍କର କୌଣସି ଶିଷ୍ୟ ଥାଆନ୍ତି, ତାଙ୍କୁ ଡକାଅ, ମୁଁ ତାଙ୍କ ସହିତ ମିଶିବି।" ରାଜକର୍ମଚ୍ଚରୀମାନେ ପଚରା ପଚରି କରି ଜଣେ ସାଧୁଙ୍କୁ ପାଇଲେ ଏବଂ ପଚ୍ଚରିଲେ—"ବାବା! ଆପଣ ସେହି ସନ୍ଥଙ୍କୁ ଜାଣନ୍ତି?" ସେ କହିଲେ—"ହଁ, ଜାଣେ। ସେ ଜଣେ ବଡ଼ ଉଚ୍ଚକୋଟିର ତ୍ୟାଗୀ ମହାତ୍ମା ଥିଲେ।" ରାଜକର୍ମଚ୍ଚରୀମାନେ ପୁଣି ଥରେ ପଚ୍ଚରିଲେ— "ଆପଣ କ'ଣ ସେହି ମହାତ୍ମାଙ୍କର ଶିଷ୍ୟ?" ସାଧୁ କହିଲେ—"ନା, ସେ କାହାକୁ ଶିଷ୍ୟ କରୁ ନ ଥିଲେ। ଅବଶ୍ୟ ମୁଁ ତାଙ୍କ ସାନ୍ନିଧ୍ୟରେ ଥିଲି।" ରାଜାଙ୍କ ପାଖରେ ଖବର ପହଞ୍ଚିଲା। ରାଜା ତାଙ୍କୁ ଡକାଇବା

ପାଇଁ ଆଦେଶ ଦେଲେ । ରାଜକର୍ମଚାରୀମାନେ ସାଧୁଙ୍କ ନିକଟକୁ ଯାଇ କହିଲେ—"ବାବା! ରାଜା ଆପଣଙ୍କୁ ଡାକୁଛନ୍ତି, ଆପଣ ଆମ ସଙ୍ଗରେ ଚାଲନ୍ତୁ ।" ସେ କହିଲେ—"ରାଜା କାହିଁକି ଡାକୁଛନ୍ତି । ରାଜା ତ ପ୍ରାୟ ଅପରାଧୀମାନଙ୍କୁ ଧରି ନେବା ପାଇଁ ଆଦେଶ ଦିଅନ୍ତି; ମୁଁ କି ଅପରାଧ କଲି?" ରାଜାଙ୍କର ଲୋକମାନେ କହିଲେ—"ନାଇଁ ଆଜ୍ଞା! ରାଜା ଆପଣଙ୍କୁ ସତ୍ସଙ୍ଗ ପାଇଁ ଓ ପାରମାର୍ଥିକ ବିଷୟ ପଚାରିବା ପାଇଁ ଡାକୁଛନ୍ତି । ଆପଣ ଆମ ସଙ୍ଗରେ ଚାଲନ୍ତୁ ।" ସାଧୁ 'ହଉ, ଠିକ୍ ଅଛି' ବୋଲି କହି ସେମାନଙ୍କ ସଙ୍ଗରେ ଚାଲିଲେ । ବାଟରେ ଗୋଟିଏ ଗଳି ଭିତରେ ସାଧୁ ବସିଗଲେ । ରାଜକର୍ମଚାରୀମାନେ ଭାବିଲେ, ସାଧୁ ସମ୍ଭବତଃ ପରିସ୍ରା କରିବାକୁ ଯାଇଛନ୍ତି । ସେହି ଗଳିରେ ଗୋଟିଏ ମାଈ କୁକୁର ଛୁଆ ଜନ୍ମ କରିଥାଏ । ସାଧୁ ଗୋଟିଏ କୁକୁର ଛୁଆକୁ ଚାଦର ଭିତରେ ଲୁଚାଇ ରାଜକର୍ମଚାରୀମାନଙ୍କ ସହିତ ଚାଲିଲେ ।

ରାଜାମାନଙ୍କ ପାଖରେ ଆସନର ବଡ଼ ମହତ୍ତ୍ୱ ଥାଏ । କାହାକୁ କେଉଁଠି ଆସନ ଦିଆଯିବ, କାହାକୁ କେତେ ଆଦର ଦିଆଯିବ, କାହାକୁ ଉଚ୍ଚ ଓ କାହାକୁ ନୀଚ ଆସନ ଦିଆଯିବ—ଏଥିପ୍ରତି ବିଶେଷ ଲକ୍ଷ୍ୟ ରଖାଯାଏ । ଆସନରେ ଯେପରି ଉଚ୍ଚନୀଚ ଭେଦଭାବ ନ ରହିବ, ସେଥିନେଇ ରାଜା ସାଧୁଙ୍କ ବସିବା ପାଇଁ ଗୋଟିଏ ଗାଲିଚା ବିଛାଇଦେଲେ ଏବଂ ନିଜେ ମଧ୍ୟ ତା' ଉପରେ ବସିଲେ । ସାଧୁ ରାଜାଙ୍କ ଆଡ଼କୁ ଗୋଡ଼ ଲମ୍ବାଇ ବସିଗଲେ । ରାଜା ଭାବିଲେ, ଏ ଜଣେ ମୂର୍ଖ, ସଭ୍ୟତା କ'ଣ ଜାଣି ନାହିଁ! କେବେ ରାଜସଭାକୁ ଯାଇ ନାହିଁ, ତେଣୁ ରାଜାଙ୍କ ଆଗରେ କିପରି ବସିବା କଥା ଜଣା ନାହିଁ । ରାଜା ପଚାରିଲେ—"ଗୋଡ଼ ଲମ୍ବେଇଲ କେବେଠୁ?" ସାଧୁ କହିଲେ—"ହାତ ଜାକିଛି ଯେବେଠୁ । ଅର୍ଥାତ୍ କିଛି ପାଇବାର ଇଚ୍ଛା ଥିଲେ ହାତ ପତେଇବାକୁ ପଡ଼େ ଓ ଗୋଡ଼ ଜାକିବାକୁ ପଡ଼େ, କିନ୍ତୁ ମୋର କିଛି ପାଇବାର ନାହିଁ, ତେଣୁ ମୁଁ ହାତ ଜାକିଦେଲି ଏବଂ ଗୋଡ଼ ଲମ୍ବେଇ ଦେଲି ।" ଏହା କହି ସାଧୁ ଭଲଭାବେ ଚକା ପକାଇ ବସିଲେ । ଏହା

ଶୁଣି ରାଜା ଭାବିଲେ, ଏ ମୂର୍ଖ ନୁହନ୍ତି, ବଡ଼ ବୁଦ୍ଧିମାନ୍ ଓ ତ୍ୟାଗୀ । ମୋତେ ଚେତାଇବା ପାଇଁ ଏପରି କଲେ । ତା'ପରେ ରାଜା ସେହି ସନ୍ତଙ୍କ ବିଷୟରେ ଚର୍ଚ୍ଚା କରିବାରୁ ସାଧୁ ଜଣକ କହିଲେ—"ବଡ଼ ଉଚ୍ଚକୋଟିର ସନ୍ତ ଥିଲେ ସେ । ସେପରି ସନ୍ତ ଆଜିକାଲି ଦେଖାଯିବା ବିରଳ ।"

ରାଜା ପଚାରିଲେ—ଆପଣ ତାଙ୍କ ସାନ୍ନିଧ୍ୟରେ ରହିଛନ୍ତି?

ସାଧୁ କହିଲେ—ହଁ, ମୁଁ ତାଙ୍କ ସାନ୍ନିଧ୍ୟରେ ରହିଛି ।

ରାଜା ପଚାରିଲେ—ଆପଣ ତାଙ୍କଠାରୁ କିଛି ନେଇଛନ୍ତି?

ସାଧୁ କହିଲେ—ନା, ରାଜନ୍! ମୁଁ ତାଙ୍କଠାରୁ କିଛି ନେଇ ନାହିଁ ।

ରାଜା ପଚାରିଲେ—ତେବେ ଆପଣ କ'ଣ ରିକ୍ତ ରହିଗଲେ?

ସାଧୁ କହିଲେ—ଯେପରି ଡବାରୁ କସ୍ତୁରୀ କାଢ଼ି ନେଲେ ମଧ୍ୟ ସେଥିରେ ସୁଗନ୍ଧ ରହିଯାଏ ଏବଂ କୌଣସି ଘିଅ ରଖାଯାଇଥିବା ପାତ୍ରରୁ ଘିଅ କାଢ଼ିନେଲେ ମଧ୍ୟ ସେଥିରେ ଚିକ୍କଣତା ରହିଯାଏ, ସେହିପରି ସନ୍ତଙ୍କ ସାନ୍ନିଧ୍ୟରେ ରହିବାରୁ ତାଙ୍କର ସୁଗନ୍ଧ ଓ ଚିକ୍କଣତା ରହିଗଲା ।

ରାଜା କହିଲେ—ସେହି ସୁଗନ୍ଧ ଓ ଚିକ୍କଣତା କ'ଣ ମୋତେ ଟିକେ ବୁଝାଇ କହନ୍ତୁ ।

ସନ୍ତ କହିଲେ—ଦେଖନ୍ତୁ, ରାଜନ୍! ଏହା ଆମ ସାଧୁଲୋକଙ୍କ କଥା, ଫକିରଙ୍କ କଥା, ରାଜାମାନଙ୍କର ଏଥିରେ କି କାମ? ଏସବୁ ଜାଣି ଆପଣ କ'ଣ କରିବେ?

ରାଜା କହିଲେ—ନାଇଁ ବାବା! ଆପଣ ଅବଶ୍ୟ କହନ୍ତୁ ।

ସାଧୁ ଗୁଦର ଭିତରେ ଲୁଚାଇ ରଖିଥିବା କୁକୁରଛୁଆଟିକୁ କାଢ଼ି ରାଜାଙ୍କ ଆଗରେ ବସାଇ ଦେଲେ ।

ରାଜା କହିଲେ—ମୁଁ ବୁଝି ପାରିଲି ନାହିଁ!

ସାଧୁ କହିଲେ—ଖରାପ ଭାବିବେ ନାହିଁ ତ?

ରାଜା କହିଲେ—ଏଥିରେ ଖରାପ ଭାବିବାର କ'ଣ ଅଛି, ମୁଁ ପଚ୍ଚାରୁଛି ପରା! ଆପଣ ସତ କଥା କୁହନ୍ତୁ।

ସାଧୁ କହିଲେ—ରାଜନ୍! ମୋତେ ଏହି କୁକୁରଛୁଆ ଓ ଆପଣଙ୍କ ମଧ୍ୟରେ କୌଣସି ପ୍ରଭେଦ ଦେଖାଯାଉ ନାହିଁ। ଏହି ସମତା ହିଁ ସେହି ସନ୍ଥଙ୍କ ସାନ୍ନିଧ୍ୟରେ ରହିବାର ସୁଗନ୍ଧ ଓ ଚିକ୍‌କଣତା! ଏ କୁକୁରଛୁଆ ଅତି ନଗଣ୍ୟ ଏବଂ ଆପଣ ଅତି ବଡ଼, ଏହା ସତ କଥା; କିନ୍ତୁ ମୋତେ ସେପରି ଦେଖାଯାଉ ନାହିଁ। ଆପଣଙ୍କର ଯେପରି ପ୍ରାଣ ଅଛି, ଏହାର ମଧ୍ୟ ସେହିପରି ପ୍ରାଣ ଅଛି। ଆପଣଙ୍କର ଶ୍ୱାସକ୍ରିୟା ଚ୍ଚାଲିଛି, ଏହାର ମଧ୍ୟ ଶ୍ୱାସକ୍ରିୟା ଚ୍ଚାଲିଛି। ଆପଣଙ୍କ ଶରୀର ପାଞ୍ଚଭୌତିକ, ଏହାର ଶରୀର ମଧ୍ୟ ପାଞ୍ଚଭୌତିକ। ଆପଣ ମଧ୍ୟ ଦେଖୁଛନ୍ତି, ଇଏ ମଧ୍ୟ ଦେଖୁଛି। ଆପଣ ମଧ୍ୟ ଖିଆପିଆ କରୁଛନ୍ତି, ଇଏ ମଧ୍ୟ ଖିଆପିଆ କରୁଛି। ଆପଣଙ୍କ ଠାରେ ଓ ଏହି କୁକୁରଛୁଆଠାରେ ପ୍ରଭେଦ କ'ଣ? ସଂସାରର ପ୍ରତ୍ୟେକ ପ୍ରାଣୀଠାରେ କିଛି ନା କିଛି ବିଶେଷତ୍ୱ ରହିଛି। କାହାଠାରେ କେଉଁ ବିଶେଷତ୍ୱ ଅଛି ତ ଅନ୍ୟ କାହାଠାରେ ଅନ୍ୟ କେଉଁ ବିଶେଷତ୍ୱ ଅଛି; ମୋଟ ଉପରେ ସମସ୍ତେ ସମାନ! ଆପଣ ଉଚ୍ଚ ପଦରେ ଅଛନ୍ତି ଏବଂ ଇଏ ବହୁତ ନୀଚ—ଏପରି ପ୍ରଭେଦ କୌଣସି ସ୍ୱାର୍ଥଗତ ସମ୍ବନ୍ଧ ଯୋଗୁଁ ହୁଏ। ମୋର କାହା ସହିତ କୌଣସି ସ୍ୱାର୍ଥଗତ ସମ୍ବନ୍ଧ ନାହିଁ। ଆପଣଙ୍କ ଠାରୁ କିଛି ନେବାର ନାହିଁ କି ଏହାଠାରୁ କିଛି ନେବାର ନାହିଁ, ତେବେ ମୋ ପାଇଁ ଆପଣ ଓ ଏ କୁକୁରଛୁଆ ମଧ୍ୟରେ ପ୍ରଭେଦ କ'ଣ? କିଛି ଖରାପ ଭାବିବେନି। ଆପଣ କହିବାକୁ ବାଧ୍ୟ କଲେ, ତେଣୁ ମୁଁ ସଫା କଥା କହିଦେଲି। ମୁଁ ଆପଣଙ୍କର ନିନ୍ଦା କରୁ ନାହିଁ, ବରଂ ପ୍ରଶଂସା କରୁଛି; କାରଣ ଆପଣ ପ୍ରଜାମାନଙ୍କର ସ୍ୱାମୀ।

ତାତ୍ପର୍ଯ୍ୟ ହେଲା, ଆମର ସଂସାରରୁ କିଛି ପାଇବାକୁ ଥିବାରୁ ହିଁ ଜଣେ ଧନୀ ଦେଖାଯାଉଛି ତ ଆଉ ଜଣେ ଗରିବ ଦେଖାଯାଉଛି। ଧନୀ ହୁଅନ୍ତୁ ବା ଗରିବ ହୁଅନ୍ତୁ, ଆମର କାହାଠାରୁ କିଛି ପାଇବାର ନାହିଁ; ପୁଣି ଆମ ପାଇଁ ଉଭୟଙ୍କ ମଧ୍ୟରେ ପ୍ରଭେଦ କ'ଣ?

ଦୋକାନୀ ପୁଡ଼ିଆରେ ଔଷଧ ବାନ୍ଧି ତାକୁ ଦେଲା। ସେ ପକେଟରେ ସେହି ପୁଡ଼ିଆଟି ରଖି ଘରକୁ ଫେରିଲା। ସବୁଦିନ ଭଳି ସେଦିନ ରାତିରେ ମଧ୍ୟ ଡାହାଣୀ ଆସିଲା। କିନ୍ତୁ ସେ ତା' ପାଖକୁ ନ ଆସି ଦୂରରେ ଠିଆ ହୋଇ ତାକୁ କହିଲା—ତୁ ତୋ ପକେଟରେ ଥିବା ପୁଡ଼ିଆଟିକୁ ଫୋପାଡ଼ି ଦେ। ସିପାହି ଜାଣିପାରିଲା ଯେ ପୁଡ଼ିଆରେ ନିଶ୍ଚିତଭାବେ କୌଣସି କରାମତି ଅଛି, ନ ହେଲେ ଡାହାଣୀ ଆଜି ମୋ ପାଖକୁ ନ ଆସି ବାହାରେ ଠିଆ ହୋଇଥାନ୍ତା କାହିଁକି! ସିପାହି ପୁଡ଼ିଆଟିକୁ ଫୋପାଡ଼ିବାକୁ ମନା କଲା। ଡାହାଣୀ ଯେତେ କହିଲେ ବି ସେ ତା' କଥା ଶୁଣିଲା ନାହିଁ। ଡାହାଣୀ ତା' ଉଦ୍ୟମ ସଫଳ ନ ହେବା ଜାଣି ସେଠାରୁ ପଳାଇଗଲା। ସିପାହି ପକେଟରୁ ପୁଡ଼ିଆଟିକୁ କାଢ଼ି ଦେଖିଲାବେଳକୁ ଗୀତାର ଶ୍ଲୋକ ଲେଖାଯାଇଥିବା ଚିରା କାଗଜ ଖଣ୍ଡିକରେ ଔଷଧ ବନ୍ଧା ହୋଇଛି! ଏହିପରି ଗୀତାର ପ୍ରଭାବ ଦେଖି ସିପାହି ସବୁବେଳେ ତା' ପକେଟରେ ଗୀତା ବହି ରଖିଲା। ତା'ପରେ ଡାହାଣୀ ଆଉ ତା' ପାଖ ମାଡ଼ିଲା ନାହିଁ।



# ଗୀତାପ୍ରେସରୁ ପ୍ରକାଶିତ ଓଡ଼ିଆ ପୁସ୍ତକାବଳୀ

## ସ୍ୱାମୀ ରାମସୁଖଦାସଙ୍କ ପ୍ରଣୀତ

430 ଗୃହସ୍ଥାଶ୍ରମରେ କିପରି ରହିବା?
754 ଗୀତାମାଧୁର୍ଯ୍ୟ
757 ଶରଣାଗତି
796 ଦେଶର ବର୍ତ୍ତମାନ ଦଶା ତଥା ତାହାର ପରିଣାମ
797 ସନ୍ତାନର କର୍ତ୍ତବ୍ୟ ଏବଂ ସତ୍ୟ ଆଶ୍ରୟ
798 ଗୁରୁତତ୍ତ୍ୱ
817 କର୍ମରହସ୍ୟ
852 ମୂର୍ତ୍ତିପୂଜା ଏବଂ ନାମଜପ
1003 ସତ୍‌ସଙ୍ଗ-ମୁକ୍ତାହାର
1004 ତାତ୍ତ୍ୱିକ ପ୍ରବଚନ
1005 ମାତୃଶକ୍ତିର ଘୋର ଅପମାନ
1121 ଶ୍ରୀମଦ୍‌ଭଗବଦ୍‌ଗୀତା ସାଧକ-ସଂଜୀବନୀ ଟୀକା
1130 ଗୁରୁ ବିନା କଣ ମୁକ୍ତି ନାହିଁ?
1138 ଆତ୍ମୀୟ ଭଗବାନ
1139 କଲ୍ୟାଣକାରୀ ପ୍ରବଚନ
1208 ଆଦର୍ଶ କାହାଣୀ ଚୟନ
1209 ପ୍ରଶ୍ନୋତ୍ତର ମଣିମାଳା
1267 ସହଜ ସାଧନା
1268 ବାସ୍ତବ ସୁଖ
1269 ଆବଶ୍ୟକ ଶିକ୍ଷା
1270 ନିତ୍ୟଯୋଗର ଉପଲବ୍ଧି
1298 ଗୀତାଦର୍ପଣ
1299 ଭଗବାନ ଓ ଭଗବଦ୍‌ଭକ୍ତି
1321 ଈଶ୍ୱରମୟ ଏ ଜଗତ
1464 ଅମୃତ ବିନ୍ଦୁ
1465 ଗୀତା ଅନ୍ୱୟ ଓ ଅର୍ଥ
1473 ସାଧନ-ସୁଧା-ସିନ୍ଧୁ
1511 ସର୍ବଜନ ଶ୍ରେୟ ପନ୍ଥା
1512 ସାଧନାର ଦୁଇଟି ପ୍ରଧାନ ସୂତ୍ର

## ଶ୍ରୀ ହନୁମାନପ୍ରସାଦ ପୋଦ୍ଦାରଙ୍କ ପ୍ରଣୀତ

865 ପ୍ରାର୍ଥନା
1011 ଆନନ୍ଦ ଲହରୀ
1041 ବ୍ରହ୍ମଚର୍ଯ୍ୟ ଓ ମନକୁ ବଶ କରିବାର କେତୋଟି ଉପାୟ
1186 ଶ୍ରୀଭଗବନ୍ନାମ
1251 ଭବରୋଗର ଔଷଧ ରାମବାଣ

## ଶ୍ରୀ ଜୟଦୟାଲ ଗୋୟନ୍ଦକାଙ୍କ ପ୍ରଣୀତ

1038 ସନ୍ଥ-ମହିମା
1039 ଭଗବାନଙ୍କର ଦୟା ଏବଂ ଭଗବତ୍ କୃପା
1040 ସତ୍‌ସଙ୍ଗର କିଛି ସାରକଥା
1078 ଭଗବତ୍‌ପ୍ରାପ୍ତିର ବିବିଧ ଉପାୟ
1079 ବାଲ୍ୟ-ଶିକ୍ଷା

1049 ଧର୍ମ କ'ଣ? ଭଗବାନ୍ କ'ଣ?
1090 ପ୍ରେମର ବାସ୍ତବ ସ୍ୱରୂପ ଓ ଶୋକନାଶର ଉପାୟ
1091 ଆମର କର୍ତ୍ତବ୍ୟ
1100 ଶ୍ରୀମଦ୍ଭଗବଦ୍‌ଗୀତା ତତ୍ତ୍ୱବିବେଚନୀ ଟୀକା
1163 ବାଳକଙ୍କ କର୍ତ୍ତବ୍ୟ
1174 ଆଦର୍ଶ ନାରୀ ସୁଶୀଳା
1187 ଆଦର୍ଶ ଭ୍ରାତୃ-ପ୍ରେମ
1203 ନଳ-ଦମୟନ୍ତୀ
1205 ରାମାୟଣର କେତେକ ଆଦର୍ଶ ପାତ୍ର
1220 ସାବିତ୍ରୀ ଓ ସତ୍ୟବାନ୍
1221 ଆଦର୍ଶ ଦେବୀଚରିତ୍ର
1252 ଭଗବାନଙ୍କ ରହିବାର ପାଞ୍ଚୋଟି ସ୍ଥାନ
1253 ପରଲୋକ, ପୁନର୍ଜନ୍ମ ଏବଂ ବୈରାଗ୍ୟ
1274 ପରମାର୍ଥସୂତ୍ର-ସଂଗ୍ରହ
1506 ଅମୂଲ୍ୟ ସମୟର ସଦୁପଯୋଗ

## ବିବିଧ

541 ଶ୍ରୀମଦ୍ଭଗବଦ୍‌ଗୀତା ଓ ବିଷ୍ଣୁସହସ୍ରନାମ (କେବଳ ଶ୍ଳୋକ, ପକେଟ ସାଇଜ୍)
815 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ବନ୍ଧାଇ)
826 ଗର୍ଭପାତ ଉଚିତ ବା ଅନୁଚିତ ଆପଣ ଭାବନ୍ତୁ
854 ଭକ୍ତରାଜ ହନୁମାନ
856 ଶ୍ରୀହନୁମାନଚାଲିଶା
863 ନବଦୁର୍ଗା (ଚିତ୍ରକଥା)
1008 ଶ୍ରୀମଦ୍ଭଗବଦ୍‌ଗୀତା (ଶ୍ଳୋକାର୍ଥ ସହିତ, ପକେଟ ସାଇଜ)
1009 ଜୟ ହନୁମାନ (ଚିତ୍ରକଥା)
1010 ଅଷ୍ଟବିନାୟକ (ଚିତ୍ରକଥା)
1036 ଶ୍ରୀମଦ୍ଭଗବଦ୍‌ଗୀତା (ଲଘୁ ଆକାର)
1068 ଗଜେନ୍ଦ୍ରମୋକ୍ଷଣସ୍ତୋତ୍ରମ୍
1069 ନାରାୟଣକବଚମ୍
1070 ଆଦିତ୍ୟହୃଦୟସ୍ତୋତ୍ରମ୍
1154 ଗୋବିନ୍ଦଦାମୋଦରସ୍ତୋତ୍ରମ୍
1157 ଶ୍ରୀମଦ୍ଭଗବଦ୍‌ଗୀତା (ଅର୍ଥ ସହିତ)
1173 ଭକ୍ତ ଚନ୍ଦ୍ରିକା
1200 ସତ୍ୟପ୍ରେମୀ ହରିଶ୍ଚନ୍ଦ୍ର
1201 ମହାତ୍ମା ବିଦୁର
1202 ପ୍ରେମୀ ଭକ୍ତ ଉଦ୍ଧବ
1204 ସୁନ୍ଦରକାଣ୍ଡ (ମୂଳ ପାଠ)
1218 ଶ୍ରୀରାମଚରିତମାନସ (ମୂଳ ପାଠ, ବଡ଼ ଅକ୍ଷର)
1219 ଶ୍ରୀପଞ୍ଚରତ୍ନଗୀତା
1248 ମୋହନ (ଚିତ୍ରକଥା)
1249 କହ୍ନେଇ (ଚିତ୍ରକଥା)
1250 ଓଁ ନମଃ ଶିବାୟ (ଚିତ୍ରକଥା)
1254 ସାଧନ-ନବନୀତ
1342 ବଡ଼ମଣିଷଙ୍କ ଜୀବନରୁ ଶିକ୍ଷା
1463 ଶ୍ରୀରାମଚରିତମାନସ (ଅର୍ଥ ସହିତ)
1476 ଶ୍ରୀଦୁର୍ଗାସପ୍ତଶତୀ (ଅର୍ଥ ସହିତ)
1494 ଚିତ୍ରମୟ ଚୈତନ୍ୟ ଲୀଳା
1509 ରାମରକ୍ଷାସ୍ତୋତ୍ର
1551 ଅତିବଡ଼ୀ ଜଗନ୍ନାଥଦାସ ପ୍ରଣୀତ ଶ୍ରୀମଦ୍‌ଭାଗବତ
1750 ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧ (ଶ୍ରୀଜଗନ୍ନାଥଦାସକୃତ)